Who is He? Is He the real Krishna?... Or an imitator?

Why has he come to you...Anand?





May be you're imagining!

Is it a dream or is that you yourself?





What really does He want from you...Anand?



**B. NAGI REDDI**
places the camera close to the inner mind of a man in

# Yehi Hai ZINDAGI

EASTMAN COLOR BY FILM CENTRE

A CLOSE-UP OF A MAN'S INNERSELF— THE CONFLICT BETWEEN HIS EGO AND HIS FULFILMENT

Director: K.S.SETHUMADHAVAN Dialogues: INDER RAJ ANAND
Lyrics: ANAND BAKSHI Music: RAJESH ROSHAN



A FILM BY VIJAYA PRODUCTIONS PVT LTD

# 'ଜହ୍ନମାମୁଁ'ର ଗ୍ରାହକମାନଙ୍କ ପ୍ରତି

ଯଦି ଆପଣ ଆପଣଙ୍କ ଠିକଣା ବଦଳାଉଥାନ୍ତି, ତେବେ ପାଞ୍ଚ ତାରିଖ ପୂର୍ବରୁ ଆପଣଙ୍କ ଗ୍ରାହକ ନମ୍ବର ସମେତ ଦୟାକରି ଆମକୁ ସେକଥା ଜଣାଇ ଦେବେ । ନ ହେଲେ ପରବର୍ତ୍ତୀ ସଂଖ୍ୟା ନୂଆ ଠିକଣାରେ ପଠାଇବା ସମ୍ଭବ ହେବ ନାହିଁ ।

ଆପଣଙ୍କ ସହଯୋଗ ଆମର କାମନା ।

ଡଲ୍ଟନ୍ ଏଜେନ୍ସୀଜ୍, ମାଡ୍ରାସ-୬୦୦ ୦୨୬

---


# ଏଇ ନୂଆ ସ୍କଲାର



**ଛାତ୍ରମାନଙ୍କ ପାଇଁ ଅତ୍ୟୁତ୍ତମ କଲମ ପ୍ରସ୍ତୁତ କରୁଛନ୍ତି ବ୍ଲାକବର୍ଡ**

ଏବେ ବ୍ଲାକବର୍ଡ ବିଶେଷକରି ଛାତ୍ରମାନଙ୍କ ପାଇଁ ପ୍ରସ୍ତୁତ କରୁଛନ୍ତି 'ସ୍କଲର' । ଏହାର ଆକାର ହାଲୁକା ଓ ସୁସମ୍ବଦ୍ଧ, ତେଣୁ ସହଜରେ ଧରି ହୁଏ···ଓ ଏହାର ବଢ଼ିଆ ଇରିଡିୟମଯୁକ୍ତ ନିବରୁ ଅନାୟାସରେ କାଳି ପ୍ରବାହିତ ହୁଏ । ଏହାକୁ ଦେଖନ୍ତୁ । ପରୀକ୍ଷା କରି ଦେଖନ୍ତୁ । ଆପଣ ମାନିବାକୁ ବାଧ୍ୟ ହେବେ ଯେ ଏହି କଲମ ସବୁ ଦୃଷ୍ଟିରୁ ଉତ୍ତମ ।

**ସ୍କଲର କଲମ—
ପୃଥିବୀ ବିଖ୍ୟାତ
ବ୍ଲାକବର୍ଡ କମ୍ପାନୀଙ୍କର
ଅନ୍ୟ ଏକ ଉତ୍କୃଷ୍ଟ କଲମ**

heros' SI-132 C ORI

# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'

ସଞ୍ଚାଳକ : ନାଗି ରେଡ୍ଡୀ

ଏହି ସଂଖ୍ୟାରୁ 'ଜହ୍ନମାମୁଁ' ଏକାଦଶ ବର୍ଷରେ ପଦାର୍ପଣ କଲା । ଭାରତୀୟ ଶିଶୁ ସମାଜର ଏହି ପ୍ରିୟ ପତ୍ରିକା ବୟସ୍କ-ମାନଙ୍କର ମଧ୍ୟ କମ୍ ପ୍ରିୟ ନୁହେଁ । ସମସ୍ତଙ୍କ ଶୁଭେଚ୍ଛାକୁ ଭିତ୍ତି କରି ଆଜି ବାରଗୋଟି ଭାଷାରେ ପ୍ରକାଶ ପାଇ ଏ ପତ୍ରିକା ଭାଷା ଭାଷା ଓ ରାଜ୍ୟ ରାଜ୍ୟ ମଧ୍ୟରେ ଏକତାର ଅନ୍ୟତମ ସେତୁ ଭାବରେ ନିଜର ନମ୍ର ଭୂମିକା ତୁଲାଇଚାଲିଛି ।

ବିରାଟ ଦେଶ ଆମର ଏଇ ଭାରତ । କଥା ଭାଷାରେ, ଚାଲିଚଳନ, ବେଶଭୂଷାରେ ରାଜ୍ୟ ରାଜ୍ୟ ଭିତରେ କେତେ ଫରକ୍ । ଅଥଚ ଏ ଦେଶର ପରମ୍ପରା ଏକ; ଜୀବନ-ଦର୍ଶନ ଏକ; ଆଧ୍ୟାତ୍ମିକ ଲକ୍ଷ୍ୟ ଏକ । 'ଜହ୍ନମାମୁଁ' ଆମକୁ ଏକଥା ସ୍ମରଣ କରାଇ ଦେଉଥାଉ ।

ବର୍ଷ : ୧୧ ଜୁଲାଇ ୧୯୭୭ ଅଙ୍କ : ୧

ପ୍ରତି ସଂଖ୍ୟା : ଟ ୧.୨୫ :: ବାର୍ଷିକ ମୂଲ୍ୟ : ଟ ୧୫.୦୦





# ଅମର ବାଣୀ

ପ୍ରଶମଶ୍ଚ କ୍ଷମା ଚୈବ-
ମାର୍ଜବଂ ପ୍ରିୟବାଦିତା ।
ଅସାମର୍ଥ୍ୟଂ ଫଳଂ ଚୈତେ
ନିର୍ଗୁଣେଷୁ ସତାଂ ଗୁଣାଃ ॥ ॥ ୧ ॥

[ଗୁଣବାନ୍ ଲୋକର ଶାନ୍ତପ୍ରିୟତା, କ୍ଷମାଶୀଳତା ଓ ସୁମଧୁର ବ୍ୟବହାର ଭଳି ଗୁଣମାନ ନିର୍ଗୁଣ ଆଖିରେ ଦୁର୍ବଳତାର ଲକ୍ଷଣ ବୋଲି ମନେହୁଏ ।]

ଆତ୍ମପ୍ରଶଂସିନଂ ଦୁଷ୍ଟଂ
ଧୃଷ୍ଟଂ ବିପରିଧାବକମ୍ ।
ସର୍ବତୋସୃଷ୍ଟଦଣ୍ଡଂ ଚ
ଲୋକସ୍ସତ୍କୁରୁତେ ନରମ୍ ॥ ॥ ୨ ॥

[ଯିଏ ଆତ୍ମ ପ୍ରଶଂସାରେ ପଟୁ, ଯିଏ ଦୁଷ୍ଟ, ଯିଏ କ୍ରୁର ଏବଂ ଯିଏ ଲୋକଙ୍କୁ ହଇରାଣ କରେ, ଏ ସଂସାରରେ ତାହାର ଆଦର ବେଶୀ !]

ନ ସାମ୍ନା ଶକ୍ୟତେ କୀର୍ତ୍ତି-
ର୍ନ ସାମ୍ନା ଶକ୍ୟତେ ଯଶଃ ।
ପ୍ରାପ୍ତୁଂ ଲକ୍ଷ୍ମଣ ଲୋକେଽସ୍ମିନ୍
ଜୟୋ ବା ରଣମୂର୍ଧନି ॥ ॥ ୩ ॥

[ହେ ଲକ୍ଷ୍ମଣ, ଏ ସଂସାରରେ କୀର୍ତ୍ତି, ଯଶ ବା ଯୁଦ୍ଧରେ ଜୟଲାଭ ଉତ୍ତମ ଲୋକ ପକ୍ଷରେ ସହଜରେ ମିଳେ ନାହିଁ ।]

ଦୁଷ୍ଟର ଲଭ



# ପଞ୍ଚତନ୍ତ୍ର

[ ୨ ] (କାକୋଲୂକୀୟମ୍)

କାକ-ରାଜା ମେଘବର୍ଣ୍ଣ ନିଜର ପାଞ୍ଚ ମନ୍ତ୍ରୀଙ୍କ ପରାମର୍ଶ ଶୁଣିସାରି କୁଳବୃଦ୍ଧ କାକ ସ୍ଥିରଜୀବୀଙ୍କୁ ତାଙ୍କ ମତ ବ୍ୟକ୍ତ କରିବାକୁ ଅନୁରୋଧ କଲେ । ସ୍ଥିରଜୀବୀ କହିଲା :

"ବାପା ! ତୁମ ମନ୍ତ୍ରୀମାନେ ଯାହାସବୁ କହିଲେ, ତାହା ରାଜନୀତି-ବିଜ୍ଞାନ ଅନୁସାରେ ସମର୍ଥନଯୋଗ୍ୟ । କିନ୍ତୁ ପୋଥି ବାଇଗଣ ଓ ବାଡ଼ି ବାଇଗଣ ଭିତରେ ତଫାତ୍ ବହୁତ । ଆମ ଶତ୍ରୁ ବଳବାନ୍ ଏବଂ ନିର୍ମମ । ଯେ କୌଣସି ପ୍ରକାରେ ତା' ଉପରେ ବିଜୟ ଲାଭ ଆମର କାମ୍ୟ । ତେଣୁ ଛଳ କଉଶଳ ହିଁ ଏ କ୍ଷେତ୍ରରେ ବାସ୍ତବ ମାର୍ଗ । ଅନ୍ୟ ପାଞ୍ଚ ଉପାୟରେ କାର୍ଯ୍ୟସିଦ୍ଧି ହୋଇପାରେ, ନ ହୋଇପାରେ । କିନ୍ତୁ କୌଶଳ ଦ୍ୱାରା ନିଶ୍ଚୟ ହେବ । ଶତ୍ରୁ ଶିବିର ଉପରେ ନିରବଧି ଆଖି ରଖିବାକୁ ହେବ । ଏବଂ ଆମ ଭିତରୁ ଜଣକୁ ଆତ୍ମୋତ୍ସର୍ଗ କରିବାକୁ ହେବ । ଏତିକି ଆବଶ୍ୟକ ।"

ମେଘବର୍ଣ୍ଣ ପଚାରିଲେ, "ହେ କୁଳବୃଦ୍ଧ ! କାକ ଓ ପେଚକ ଭିତରେ ବିବାଦ ଲାଗି ରହିବାର ଐତିହାସିକ କାରଣ କ'ଣ ?"

ସ୍ଥିରଜୀବୀ କହିଲା : ସେ ବହୁକାଳ ପୂର୍ବର କଥା । ଥରେ ବନସ୍ତର ପକ୍ଷୀମାନେ ଏକତ୍ର ହୋଇ ଗୋଟିଏ ସମ୍ମିଳନୀ କଲେ । ସେମାନଙ୍କ ଆଲୋଚ୍ୟ ବିଷୟ ଥିଲା ପକ୍ଷୀକୁଳର ରାଜପଦ । ଗରୁଡ଼ ହେଲେ ପକ୍ଷୀସମାଜର ଶାସ୍ତ୍ରସମ୍ମତ ରାଜା । କିନ୍ତୁ ଗରୁଡ଼ ସର୍ବଦା ବିଷ୍ଣୁଙ୍କ ସେବାରେ ବ୍ୟସ୍ତ ରହନ୍ତି । ଏଣେ ପକ୍ଷୀମାନଙ୍କୁ ମଣିଷମାନେ ନାନା ଉପାୟରେ ଧରି ନେଇଯାଇ ଆହାର କରନ୍ତି ବା ବନ୍ଦୀ ବନାନ୍ତି । ରାଜା ଯଦି ପ୍ରଜାର ସୁଖଦୁଃଖ ନ ଦେଖିଲା, ତେବେ ସେ ରାଜା ରହିବାରେ



ମୂର୍ଖ କ'ଣ ? ତେଣୁ ସେମାନେ ଜଣେ ନୂଆ ରାଜା ମନୋନୀତ କରିବାକୁ ସ୍ଥିର କଲେ ।

କିନ୍ତୁ ରାଜା ହେବ କିଏ ? ପକ୍ଷୀମାନେ ଭାବି-ଚିନ୍ତି ଦେଖିଲେ, ପେଚା ବଡ଼ ଗୁରୁଗମ୍ଭୀର ଦେଖାଯାଉଛି । ରାଜପଦ ତାକୁହିଁ ଶୋଭା ପାଇବ ।

ପେଚାର ଅଭିଷେକ ପ୍ରସ୍ତାବ ସମସ୍ତଙ୍କ ମନକୁ ପାଇଲା । ସେହି ଅନୁସାରେ ଆୟୋଜନ ଆରମ୍ଭ ହୋଇଗଲା । ସିଂହାସନ ନିର୍ମିତ ହେଲା ଓ ତହିଁ ଉପରେ ବାଘଛାଲ ବିଛାଇ ଦିଆଗଲା । ଗଙ୍ଗା-ନଦୀରୁ ପବିତ୍ର ପାଣି ଅଣା ହେଲା । ପଣ୍ଡିତ ପକ୍ଷୀମାନେ ମନ୍ତ୍ର ପଢ଼ିଲେ, ବ୍ରାହ୍ମଣ ପକ୍ଷୀମାନେ ବେଦପାଠ କଲେ । ମଙ୍ଗଳ ବାଦ୍ୟ ବାଜିଲା ; ଆରମ୍ଭ ହେଲା । ପେଚା ଆସି ସିଂହାସନ ଆରୋହଣ କଲା । ଅଭିଷେକ କାର୍ଯ୍ୟ ସମ୍ପନ୍ନ ହେବାକୁ ଯାଉଛି, ସେତିକିବେଳେ କର୍କଶସ୍ୱରରେ ରାବି ରାବି କାକ ଆସି ସେଠାରେ ପହଞ୍ଚିଲା ।

ସେ ପକ୍ଷୀମାନଙ୍କ ଭିଡ଼ ଦେଖି ଭାବିଲା ହୁଏତ କୌଣସି ଉତ୍ସବ ହେଉଛି । ତେଣୁ ପକ୍ଷୀମାନଙ୍କ ପାଖକୁ ଆସି ପଚାରିଲା, "କଥା କ'ଣ ? ହଠାତ୍ ଏଭଳି ଉତ୍ସବର ଆୟୋଜନ କାହିଁକି ?"

ପକ୍ଷୀମାନଙ୍କର ସେତେବେଳେ ଯାଇ ମନେ ପଡ଼ିଲା ଯେ ସେମାନଙ୍କ ପୂର୍ବ ସମ୍ମିଳନୀରେ କାକ ନ ଥିଲା । ଅଥଚ ପଶୁମାନଙ୍କ ଭିତରେ ଯେପରି ଶୃଗାଳ ଧୂର୍ତ୍ତ, ପକ୍ଷୀମାନଙ୍କ ଭିତରେ ସେହିପରି କାକ ଧୂର୍ତ୍ତ । ତେଣୁ ତା'ର ପରାମର୍ଶ ବିନା କିଛି କରିବା ଉଚିତ ନୁହେଁ । ସେମାନେ ତେଣୁ କାକକୁ ସ୍ୱାଗତ କରି କହିଲେ, "କଥା କ'ଣକି, ଆମର କୌଣସି ରାଜା ନାହାନ୍ତି କହିଲେ ଚଳେ । ତେଣୁ ଗୁରୁଗମ୍ଭୀର ପେଚାକୁ ସେ ପଦରେ ବସାଇବାକୁ ଠିକ କଲୁ । ତୁମେ ଆମ ସିଦ୍ଧାନ୍ତରେ ଏକମତ ନିଶ୍ଚୟ !"

କାକ ଉତ୍ତର ଦେଲା; "କଦାପି ନୁହେଁ ! ରାଜହଂସ ଓ ମୟୂର ଭଳି ପକ୍ଷୀମାନେ ଥାଉଁ ଥାଉଁ ପେଚାକୁ ରାଜା କରିବା ହାସ୍ୟାସ୍ପଦ କଥା । ପେଚା ଦିନବେଳେ ଦେଖିପାରେନାହିଁ; ତା' ଚେହେରା ଭୟ ଉଦ୍ରେକ କରେ । ତୁମେମାନେ

ତାକୁ ଉପରେ ରାଜା ରୂପେ ଅଭିଷିକ୍ତ କରିବାକୁ ଯାଉଛ ? ଲୋକେ ଶୁଣିଲେ କହିବେ କ'ଣ ?"

ପକ୍ଷୀମାନେ ନୀରବ ରହିଲେ । କାକ ପୁଣି କହିଲା, "ଯାହାକୁ ଦେଖିଲେ ଭୟ ଓ ଘୃଣାଭାବ ଆସେ, ସେ ପୁଣି ରାଜାସନରେ ବସିବ ! କାହିଁ ଗରୁଡ଼, କାହିଁ ପେଚା । ଗରୁଡ଼ ବିଷ୍ଣୁଙ୍କ ବାହନ । ସେ ହେଲେ ଦେବ ପକ୍ଷୀ । ତାଙ୍କୁ ରାଜା ରୂପେ ପାଇଥିବାରୁ ଆମ୍ଭେମାନେ ନିଜ ନିଜକୁ ଗୌରବାନ୍ୱିତ ମନେ କରିବା ଉଚିତ । ତାଙ୍କ ନାମ ଶୁଣିଲେ ଶତ୍ରୁପକ୍ଷ ଚୁନଆ ହୋଇଯାଆନ୍ତି । ସେପରି ମହତ୍ ରାଜାଙ୍କୁ ତ୍ୟାଗ କରିବା କ'ଣ ବିଜ୍ଞତାର କାମ ? ଚନ୍ଦ୍ର ମହତ୍ ବୋଲି ସିନା ଠେକୁଆମାନେ ତାଙ୍କୁ ନିଜ ରାଜା ରୂପେ ବାଛିଥିଲେ ?"

"ସେ ଘଟଣାଟି କ'ଣ ?" ପକ୍ଷୀମାନେ ପଚାରିଲେ ।

ପକ୍ଷୀମାନଙ୍କର ଅନୁରୋଧ କ୍ରମେ କାକ ସେଇଠି ଚନ୍ଦ୍ର ସରୋବରର କାହାଣୀ ଶୁଣାଇଲା :

ଗୋଟିଏ ଅରଣ୍ୟରେ ଚତୁର୍ଦ୍ଦନ୍ତ ନାମକ ହାତୀ-ରାଜା ବାସ କରୁଥିଲେ । ସେ ହାତୀମାନଙ୍କ ନିରାପତ୍ତା ପାଇଁ ଅନେକ ପ୍ରକାର ସୁବ୍ୟବସ୍ଥା କରିଥିଲେ ।

ପରେ କ୍ରମାଗତ ଭାବରେ କେତେବର୍ଷ ବର୍ଷା ହେଲା ନାହିଁ । ଅରଣ୍ୟ ଭିତରେ ଥିବା ନଦୀ, ସରୋବର, ଇତ୍ୟାଦି ଶୁଖିଗଲା । ହାତୀମାନେ ଦିନେ ଯାଇ ସେମାନଙ୍କ ରାଜାଙ୍କୁ କହିଲେ, "ଆଜ୍ଞା ! ଶୋଷରେ ଆମେ ମଲୁ ! କୌଣସି ସରୋବରର ସନ୍ଧାନ ନ କଲେ ଆମ ଜାତିର ସର୍ବନାଶ ହୋଇଯିବ । ଆପଣ ତୁରନ୍ତ କୌଣସି ବ୍ୟବସ୍ଥା କରନ୍ତୁ ।"

ଚତୁର୍ଦ୍ଦନ୍ତ ସଙ୍ଗେ ସଙ୍ଗେ କ୍ଷିପ୍ରଗାମୀ କେତେକ ହାତୀଙ୍କୁ ଭିନ୍ନ ଭିନ୍ନ ଦିଗକୁ ସରୋବର ଅନ୍ୱେଷଣରେ ପଠାଇଲା । ପୂର୍ବ ଦିଗକୁ ପ୍ରେରିତ ଦୂତ ଚନ୍ଦ୍ର ସରୋବରର ସନ୍ଧାନ ପାଇଲା ।



# ରୂପାନ୍ତରିତ ମନ୍ଦିର

ଲାଓସ୍‌ର ବାଲପ ନିକଟରେ ଏହି ପ୍ରାଚୀନ ମନ୍ଦିର ଦେଖାଯାଏ । ଏକଦା ଏହା ବ୍ରାହ୍ମଣମାନଙ୍କର ଏକ ପୂଜାପୀଠ ଥିଲା । କିନ୍ତୁ କାଳକ୍ରମେ ଏହା ବୌଦ୍ଧମାନଙ୍କ ଆୟତ୍ତାଧୀନ ହେଲା । ଅଦୂରରେ ମୀକାଙ୍ଗ ନଦୀ ସମୀପବର୍ତ୍ତୀ ପର୍ବତ ଦେହରୁ ଝରୁଥାଏ ଏକ ସ୍ରୋତ । ଏହାର ନୀର ପବିତ୍ର ବୋଲି ବିଶ୍ୱାସ କରାଯାଏ ।





# ସାମ୍ବୁ ସରୋବର

[ ୧୭ ]

[କୃପାଣଜିତ୍ ବାମନମାନଙ୍କ ଭିତରେ ନିଜ ପ୍ରତି ବିଶ୍ୱାସ ଉତ୍ପାଦନ ପାଇଁ ସମସ୍ତ ଚେଷ୍ଟା କରିବା ସତ୍ତ୍ୱେ ତାଙ୍କୁ ମାରି ଦେବା ଉଦ୍ଦେଶ୍ୟରେ ଶଙ୍କରସିଂହ ରାତିରେ ତା' କୁଡ଼ିଆ ଘରେ ନିଆଁ ଲଗାଇ ଦେଲା । କୃପାଣଜିତ୍ ଦୈବାତ୍ ଝସି ଆସି ବାହାରେ ବାମନମାନଙ୍କୁ ଆଖିବୁଜା ମାଡ଼ ମାରିବାକୁ ଲାଗିଲା । ସେତିକିବେଳେ ଜଙ୍ଗଲରେ ବିଚରଣଶୀଳ ଦୁଇଜଣ ବିଚିତ୍ର ମଣିଷ ସେ ଦୃଶ୍ୟ ଦେଖିଲେ । ତାପରେ···]

ଜଙ୍ଗଲରେ ସଦ୍ୟ ପ୍ରବେଶ କରିଥିବା ଦୁଇ ବିଚିତ୍ର ମଣିଷ ବାମନ ବସ୍ତି ଆଡ଼କୁ ବିସ୍ମୟ ଭରେ ଅନାଇଲେ । ଜଣେ ତରବାରି ବାହାର କରି ଅନ୍ୟଜଣକୁ କହିଲା, "ଭାଇ ସର୍ପନଖ ! ମନେହୁଏ ଏ ବସ୍ତି ଉପରେ କୌଣସି ଶତ୍ରୁ ଆସି ଚଢ଼ାଉ କରିଛି ।"

ସର୍ପନଖ ଟିକିଏ ତାଚ୍ଛଲ୍ୟସୂଚକ ହସ ହସି ଦେଇ କହିଲା, "ସେଥିରେ ଆମର ଯାଏ ଆସେ କ'ଣ ? ଆମର ବା ଏମାନଙ୍କ ସହ କ'ଣ ଦରକାର ? ଆମେ ବାହାରିଛୁଁ ଆମ କାମରେ । ଏ ବଣ ଭିତରେ ଆମେ ଅଧିକ ସମୟ କଟାଇବା ଦରକାର ନାହିଁ । ଚାଲ ଆଗକୁ ।"

"ଭାଇ, ତମେ ଠିକ୍ କହୁଛ ଯେ, କିନ୍ତୁ ମୋ ମନରେ ଗୋଟାଏ ସନ୍ଦେହ ଦେଖା ଦେଇଛି ।"




ଏହା କହି ସର୍ପସ୍ୱର ତା' ଘୋଡ଼ା ଉପରେ ଠିଆ ହୋଇ ପଡ଼ି ଗଛ ଡାଳ ଧରି ଅଦୂରର ବସ୍ତି ଆଡ଼କୁ ଅନାଇ କହିଲା, "ଭାଇ ! ବଡ଼ ଅଦ୍ଭୁତ ଘଟଣା ଘଟୁଛି । ଗୋଟାଏ ଭୟଙ୍କର ନରବାନର ଏବଂ ଜଣେ ସାଧାରଣ ମଣିଷ ମିଶି ବାମନ-ମାନଙ୍କୁ ନାକେଦମ୍ କରୁଛନ୍ତି । ଆମେ ଏ ଅତ୍ୟାଚାର ଦେଖି କିପରି ନିଜ ବାଟରେ ଚାଲିଯିବୁଁ ?"

"ଏପରି କଥା ? ତେବେ ତ ସେ ନରବାନର ଓ ସେ ଲୋକଟିକୁ ବନ୍ଦୀ କରିବା ନିହାତି ଦରକାର ! ହୁଏତ ସେମାନଙ୍କଠାରୁ ଆମର ନିଖୋଜ ସାଥିର କୌଣସି ଖବର ମିଳିବ ।" ଏହା କହି ସର୍ପନଖ ଘୋଡ଼ା ଆଗକୁ ବଢାଇଲା । ଘୋଡ଼ା ଜିନ୍‌ରେ ଖୋସା ହୋଇଥିବା ଖଣ୍ଡିଏ ଲମ୍ବ ଦୋଡ଼ି ନିଜ ହାତକୁ ନେଇ ରଖିଲା ।

ଦୁହେଁ ଅଳ୍ପ ସମୟ ଭିତରେ ବାନରମାନଙ୍କ ବସ୍ତିରେ ଯାଇ ପହଞ୍ଚିଗଲେ । ସେତେବେଳକୁ ନରବାନର ନିଜର ଆସୁରିକ ବଳ ଦ୍ୱାରା ବାମନମାନଙ୍କର କୁଡ଼ିଆମାନ ଟାଣି ଭାଙ୍ଗି ପକାଉଥାଏ । କୃପାଣଜିତ୍ ଉନ୍ମତ୍ତ ଭଳି ଗୋଟାଏ ଡାଳ ଧରି ବାମନମାନଙ୍କୁ ପିଟୁଥାଏ ।

"ଭାଇ ସର୍ପନଖ ! ମୁଁ ଏ ନରବାନରକୁ ଥରେ ଦେଖି ନିଏଁ । ତମେ ସେ ଦୁଷ୍ଟ ଲୋକଟାକୁ କାବୁ କରିବାକୁ ଚେଷ୍ଟା କର ।" ଏହା କହି ସର୍ପସ୍ୱର ନରବାନର ଆଡ଼କୁ ଘୋଡ଼ା ଛପଟାଇ ଦେଲା ।

ସର୍ପନଖ ନିଜ ହାତରେ ଥିବା ଦଉଡ଼ିର ଗୋଟିଏ ପ୍ରାନ୍ତରେ ଫାସ କରି ତାକୁ କୃପାଣଜିତ୍ ଉପରକୁ ଫୋପାଡ଼ିବା ସଙ୍ଗେ ସଙ୍ଗେ ଚିତ୍କାର କଲା, "ମାୟାସରୋବରେଶ୍ୱରଙ୍କ ଜୟ !"

ବିଚିତ୍ର ଘୋଡ଼ା ଉପରେ ଉପବିଷ୍ଟ ଦୁଇଜଣ ବିଚିତ୍ର ମଣିଷ ହଠାତ୍ ଆବିର୍ଭୂତ ହେବାର ଦେଖି କୃପାଣଜିତ୍ ଯେତିକି ଚକିତ ହୋଇଯାଇ ଥିଲା, ବାମନମାନେ ବି ସେତିକି ଚକିତ ହୋଇ ଥିଲେ । ସର୍ପନଖ ଫୋପାଡ଼ି ଥିବା ଫାସ କୃପାଣଜିତ୍‌ର କଣ୍ଠରେ ବସି ଯାଇଥିଲା । ସେଥିରେ ତା' କଣ୍ଠରୋଧ ହେବାର ଅବସ୍ଥା



ହେବାରୁ ସେ ପାଟିକରି କହିଲା, "ମହାଶୟ ! ମୋତେ ମାର ନାହିଁ । ତମରି ଭଳି ଦିଶୁଥିବା ଜଣେ ଲୋକ ଥରେ ଗୋଟାଏ ବିପଦ ହାତରୁ ଉପରେ ଚଢ଼ି ଆସିଥିଲେ । ସେତେବେଳେ ମୁଁ ତାଙ୍କୁ ବହୁତ ସାହାଯ୍ୟ କରିଥିଲି । ତେଣୁ ମୋତେ ଦୟାକରି ଛାଡ଼ିଦିଅ ।"

ସର୍ପନଖ ବିସ୍ମୟଭରା କଣ୍ଠରେ ପଚାରିଲା, "ତା' ମାନେ ତମେ ମକରକେତୁଙ୍କୁ ଜାଣିଛ ? ତାଙ୍କ ଭଳି ଯୋଦ୍ଧା ତମ ସାହାଯ୍ୟ ଲୋଡ଼ିଥିଲେ କାହିଁକି ? ସେ କ'ଣ କିଛି ବିପଦରେ ପଡ଼ିଥିଲେ ? ଶୀଘ୍ର କୁହ, ମକରକେତୁ ବର୍ତ୍ତମାନ କେଉଁଠାରେ ?"

କୃପାଣଜିତ୍ ହାତ ଯୋଡ଼ି କହିଲା, "ଆଜ୍ଞା, ମୋ କଣ୍ଠରେ ଏ ଫାସ ବସି ଥାଉଁ ଥାଉଁ ମୁଁ କଥା କହିବି କିପରି ? ଆପଣ ଦୟାକରି ଦଉଡ଼ିର ଟାଣ ଟିକିଏ କୋହଳ କଲେ ସିନା ମୁଁ ଆପଣଙ୍କ ପ୍ରଶ୍ନର ଉତ୍ତର ଦିଅନ୍ତି !"

"ବେଶ୍ କଥା । କିନ୍ତୁ ଯଦି ତମେ ପଳାଇବାକୁ ଚେଷ୍ଟା କରିବ, ତେବେ ଏହି ଫାସ ହେବ ତମର କାଳଫାସ । ମନେ ରଖ ।" ଏହା କହି ସର୍ପନଖ ଟାଣି ଧରି ଥିବା ଦଉଡ଼ି ଟିକିଏ କୋହଳ କଲା ।

କୃପାଣଜିତ୍ ଦୁଇ ହାତରେ ଫାସକୁ ମେଲି ଧରି ଟିକିଏ ଢ଼ିଲା କଲା ଏବଂ ଜୋରରେ ନିଃଶ୍ୱାସ ନେଇ କହିଲା, "ମହାଶୟ, ମକରକେତୁ ବର୍ତ୍ତମାନ କେଉଁଠାରେ, ସେକଥା ମୁଁ ଜାଣେନା । ତେବେ ଆପଣମାନଙ୍କୁ ଦେଖି ମୋର ସବୁ କଥା ମନେ ପଡ଼ୁଛି । କିଛିଦିନ ଆଗରୁ ଅମରାବତୀ ନିବାସୀ ଜୟଶୀଳ ଓ ତା'ର ଜଣେ କାପାଳିକ ମିତ୍ର ମିଶି ମକରକେତୁଙ୍କୁ ଜଙ୍ଗଲ ଭିତରେ ନାନା ପ୍ରକାରେ ହଇରାଣ କରିଥିଲେ । ଜଙ୍ଗଲବାସୀମାନଙ୍କ ନିକଟରୁ ମୁଁ ଏ ସମ୍ବାଦ ପାଇଥିଲି ।"

ଏହା ଶୁଣି ସର୍ପନଖ କ୍ରୁଦ୍ଧ କଣ୍ଠରେ କହିଲା, "ଆରେ ଦୁଷ୍ଟ ! ମୁଁ ପଚାରୁଛି କ'ଣ, ତୁ କହୁଛୁ କ'ଣ ! ତୁ ଏବେ କହିଲୁ କି ମକରକେତୁଙ୍କୁ ତୁ ସାହାଯ୍ୟ କରିଥିଲୁ । ମୁଁ ପଚାରୁଛି, ବର୍ତ୍ତମାନ ମକରକେତୁ କେଉଁଠାରେ ? ତୁ ବାଜେ କଥା



"କହି ମୋ ସମୟ ନଷ୍ଟ କରୁଛୁ କାହିଁକି ?"

କୃପାଣଜିତ୍ ସିନା ନିଜକୁ ବଞ୍ଚାଇବା ପାଇଁ ମକରକେତୁକୁ ଜାଣେ ବୋଲି କହି ଦେଇଥିଲା, କିନ୍ତୁ ପ୍ରକୃତରେ ସେ ମକରକେତୁ କେବେ ଦେଖି ନ ଥିଲା । ଜଙ୍ଗଲର ଲୋକଠାରୁ ମକର କେତୁ ସମ୍ପର୍କରେ ଶୁଣିଥିଲା ମାତ୍ର ।

ପୁଣି ଗୋଟାଏ କି ଧରଣର ମିଛ କହି ନିଜକୁ ବଞ୍ଚାଇବ, କୃପାଣଜିତ୍ ସେହି କଥା ଭାବୁଛି, ସେତିକିବେଳେ କେହି ବାମନ ହସି ଉଠିଲେ । ସର୍ପନଖ ରାଗିଯାଇ ସେମାନଙ୍କୁ ଚାହିଁଲା । ଶଙ୍କର ସିଂହ ହାତ ଯୋଡ଼ି କରି କହିଲା, "ହେ ଜଳାଶ୍ୱ ଯୋଦ୍ଧା ! ଆପଣ ଏ ଦୁଷ୍ଟ ସହ କଥା-ବାର୍ତ୍ତା କରିବାରେ ବ୍ୟସ୍ତ । ଆପଣଙ୍କ ସାଥିର ଅବସ୍ଥା କ'ଣ ହେଲା, ସେ କଥା ଭାବୁ ନାହାନ୍ତି ।"

ଶଙ୍କରସିଂହ ଏହା କହିବାରୁ ସର୍ପନଖ ନିଜ ସାନ ଭାଇ ସର୍ପସ୍ୱର କଥା ସ୍ମରଣ କଲା । ସେ ଏଣେ ତେଣେ ଅନାଇ ପାଟି କରି ଡାକିଲା, ସର୍ପସ୍ୱର ! ତୁମେ କେଉଁଠି ? ନରବାନର ଗଲା କୁଆଡ଼େ ?"

କିନ୍ତୁ ସେ ବାରମ୍ବାର ପାଟିକରି ଏହା ପଚାରିବା ସତ୍ତ୍ୱେ କୌଣସି ଉତ୍ତର ମିଳିଲା ନାହିଁ । ସର୍ପନଖ ଦାନ୍ତ କଡ଼ମଡ଼ କରି ବାମନମାନଙ୍କ ଆଡ଼କୁ ଅନାଇଲା । ସେମାନେ ମୁଣ୍ଡ ତଳକୁ କରି ଠିଆ ହୋଇଥାନ୍ତି ।

"ବୁଦ୍ଧୁମାନେ, ତୁମେମାନେ ମାଟିକୁ ଅନାଇ ଦେଖୁଛ କ'ଣ ? କ'ଣ ହୋଇଛି ? ଶୀଘ୍ର କହି ପକାଅ ।" ସର୍ପନଖ ଗର୍ଜନ କରି ପଚାରିଲା ।

ଶଙ୍କରସିଂହ ମୁଣ୍ଡ ଉଠାଇ ନମ୍ର ଭାବରେ ଉତ୍ତର ଦେଲା, "ହେ ଜଳାଶ୍ୱ ଯୋଦ୍ଧା ! ଆପଣଙ୍କ ଭାଇ ଓ ନରବାନର ସେ ବୁଦା ଆଡ଼ୁଆଳରେ ଅଦୃଶ୍ୟ ହୋଇଗଲେଣି ଜଳାଶ୍ୱଟି ଅନ୍ୟ ଦିଗକୁ ଯାଇଛି । ସେ ନରବାନର ଏ ଦୁଷ୍ଟ କୃପାଣଜିତ୍‌ର ପାଳିତ ଜୀବ । ସେ ଜୀବ ଖାଉନ୍ଦ ନ କହିଲେ ବି ଖାଉନ୍ଦର ମନ କଥା ବୁଝିପାରେ ଓ ସେହି ଅନୁସାରେ କାମ କରେ । ହୁଏତ ସଙ୍କେତ ଦ୍ୱାରା କୃପାଣଜିତ୍ ତାକୁ ଆଦେଶ ଦେଇଛି ଆପଣଙ୍କ

ଭାଇକୁ ଦୂରକୁ ନେଇଯାଇ ତାଙ୍କ ଶ୍ରାଦ୍ଧ ସମାପନ କରି ଫେରିବା ପାଇଁ ।"

ସର୍ପନଖ ଏହାଶୁଣି ଗୋଟାଏ ବିକଟ ଚିତ୍କାର କରି ଆଖି ଲାଲ୍ କରି କୃପାଣଜିତ୍ କଣ୍ଠରେ ଲାଗିଥିବା ଫାସ ଦଉଡ଼ିଟିର ଅନ୍ୟ ପ୍ରାନ୍ତ ଶଙ୍କର ସିଂହ ହାତରେ ଦେଇ କହିଲା, "ଦୁଷ୍ଟ ଯେପରି ପଳାଇ ନ ଯିବ, ସେ ଦାୟିତ୍ୱ ତମ ଉପରେ ରହିଲା । ମୁଁ ସଙ୍ଗେ ସଙ୍ଗେ ସେ ନରବାନରକୁ ବଧ କରି ମୋ ସାନ ଭାଇକୁ ମୁକ୍ତ କରି ଫେରିବି ।" ଏହା କହି ସେ ଜଳାଶୟ ଛୁଟାଇ ସମ୍ମୁଖବର୍ତ୍ତୀ ବୁଦା ଆଡ଼କୁ ମାଡ଼ିଗଲା ।




ବାମନ ଜାତିର ବସ୍ତିରୁ ଉଠୁଥିବା ଧୂଆଁ ଜୟଶୀଳ ଓ ତନ୍ତ୍ରସାଧକ ଦେଖିଥିଲେ । ସଙ୍ଗେ ସଙ୍ଗେ ନରବାନର ସହ ଶଙ୍କରସିଂହର ଅନୁଚରମାନଙ୍କର ଯେଉଁ ଲଢ଼େଇ ହେଉଥିଲା, ତା'ର କୋଳାହଳ ମଧ୍ୟ ଶୁଣିଥିଲେ । ଏହାର କାରଣ ନିରୂପଣ କରିବା ନିମନ୍ତେ ସେ ଦୁହେଁ ସେମାନଙ୍କ ପକ୍ଷର ବାମନ ସେନାପତିକୁ ପଠାଇ ଥିଲେ ।

ସେନାପତି ନିଜର ଦୁଇଜଣ ଅନୁଚର ଗହଣରେ ବଣର ଏପଟେ ଅବସ୍ଥିତ ପାହାଡ଼ ଉପରେ ପହଞ୍ଚିଲା ଓ ଶଙ୍କରସିଂହର ବସ୍ତି ଆଡ଼କୁ ଦୃଷ୍ଟିପାତ କଲା । ସେତେବେଳେ ବସ୍ତି ଭିତରେ କେତୋଟି କୁଡ଼ିଆ ଜଳୁଥାଏ । କୃପାଣଜିତ୍ ଓ ନରବାନର ବାମନମାନଙ୍କୁ ବାଡ଼ିଆପିଟା କରୁଥା'ନ୍ତି ।

ସେ ଦୃଶ୍ୟ ଦେଖି ବାମନ ସେନାପତି ଖୁସି ହୋଇ ଜୟଶୀଳଙ୍କୁ ସେ ସମ୍ବାଦ ଶୁଣାଇବା ନିମନ୍ତେ ପାହାଡ଼ରୁ ଓହ୍ଲାଇବାକୁ ଯାଉଛି, ସେତିକିବେଳେ ସେ ଦୁଇ ବିଚିତ୍ର ଅଶ୍ୱାରୋହୀ ଆସି ସେଠାରେ ଆବିର୍ଭୂତ ହେଲେ କୃପାଣଜିତ୍ ଓ ନରବାନର ଆଡ଼କୁ ଝପଟି ଗଲେ ।

"ଏ ବିଚିତ୍ର ଘୋଡ଼ା କେଉଁଠାରୁ ଆସିଲେ ? ଏ ବିଚିତ୍ର ବେଶୀ ବ୍ୟକ୍ତି ଦୁଇଟିଙ୍କର ପରିଚୟ କ'ଣ ?" ଏହା ଭାବି ବାମନ ସେନାପତି ଆଶ୍ଚର୍ଯ୍ୟ ହେଲା । ପର ମୁହୂର୍ତ୍ତରେ ସେ ଦେଖିଲା, ଆଗନ୍ତୁକ



ଦୁଇଜଣ ଭିତରୁ ଜଣେ ଗୋଟିଏ ଲମ୍ବା ଦଉଡ଼ି ଫୋପାଡ଼ି କୃପାଣଜିତ୍‌ଙ୍କୁ କାବୁ କରି ନେଲା । ଅନ୍ୟ ଜଣକ ତରବାରି ବୁଲାଇ ନରବାନର ଆଡ଼କୁ ଝପ୍‌ଟି ଗଲା ।

ବାମନ ସେନାପତି ଆନନ୍ଦରେ ଅଟ୍ଟହାସ୍ୟ କରି ଅନୁଚର ଦୁହିଙ୍କୁ ସେଇଠାରେ ଅପେକ୍ଷା କରିବାକୁ ଆଦେଶ ଦେଇ କହିଲା, "ଶୁଣ, ଶଙ୍କରସିଂହ ପକ୍ଷର ସର୍ବନାଶ କରିବା ନିମନ୍ତେ ଏହା ଆମ ପାଇଁ ଏକ ସୁବର୍ଣ୍ଣ ସୁଯୋଗ । ମୁଁ ଏ କଥା ଯାଇ ରାଣୀଙ୍କୁ ତଥା ସେ ଦୁଇ ମହାବୀରଙ୍କୁ କହିବି ଏବଂ ସାଥିରେ ସୈନ୍ୟଦଳ ଧରି ଫେରିବି । ତୁମେ ଦୁହେଁ ଏଇଠାରେ ଥାଇ ଅବସ୍ଥା ଲକ୍ଷ୍ୟ କରୁଥାଅ ।" ଏହା କହି ସେନାପତି ଚାଲିଗଲା ।

ବାମନ ସେନାପତିଠାରୁ ସବୁ ଖବର ଶୁଣି ତନ୍ତ୍ର ସାଧକ ନିଜ ତ୍ରିଶୂଳ ଉଠାଇ ହର୍ଷଭରେ ଚିତ୍କାର କଲେ, "ଜୟ ମହାକାଳଙ୍କର ଜୟ ! ତା'ପରେ ସେ ଜୟଶୀଳଙ୍କୁ କହିଲେ, "ଜୟଶୀଳ ! ଆମ କାମ ଏଥର ସୁସମ୍ପନ୍ନ ବୋଲି ଜାଣିବ । ଏ ବଣିକ ଅଶ୍ୱାରୋହୀ ଦୁଇଜଣ ଯେ ମକର କେତୁରହିଁ ଦଳର ଲୋକ, ଏଥିରେ କୌଣସି ସନ୍ଦେହ ନାହିଁ । ମକରକେତୁ ସିନା ପଳାଇଗଲା, ବର୍ତ୍ତମାନ କଳେ ବଳେ କୌଶଳେ ଏ ଦୁହିଙ୍କୁ ବନ୍ଦୀ କରି ଆମକୁ ମାୟାସରୋବରେଶ୍ୱରର ଠିକଣା ଜାଣିବାକୁ ହେବ । ତା'ପରେ ରାଜା ବନକାକ୍ଷଙ୍କ ପୁତ୍ର କାଞ୍ଚନବର୍ମା ଓ କନ୍ୟା କାଞ୍ଚନମାଳାଙ୍କୁ ମୁକ୍ତ କରିବା ଆଉ କଠିନ ହେବ ନାହିଁ ।"

ଜୟଶୀଳ ତନ୍ତ୍ରସାଧକଙ୍କର ଏତେ ଉତ୍ସାହବ୍ୟଞ୍ଜକ କଥା ଶୁଣି ମଧ୍ୟ ମୌନ ରହିଲେ । ତନ୍ତ୍ର ସାଧକ ଅସନ୍ତୁଷ୍ଟ ହୋଇ କହିଲେ, "ଜୟଶୀଳ ! ମୋ କଥା ତମ କାନରେ ପଶିଲା ନା ନାହିଁ ?"

ଜୟଶୀଳ ଈଷତ୍ ହସି କହିଲେ, "ତମେ ମନ୍ତ୍ର ପାଠ କଲା ଭଳି ଏକା ନିଃଶ୍ୱାସରେ ଯାହା ସବୁ କହିଗଲ, ସେସବୁ ମୁଁ ଶୁଣିଲି ନିଶ୍ଚୟ,

କିନ୍ତୁ ଦୁଇ ଜଣ ବିଦେଶ ଅଶ୍ୱାରୋହୀ ବଣ ଭିତରେ ପହଞ୍ଚିବା ସମ୍ବାଦ ଶୁଣିହିଁ ତମେ ଏତେ ପୁଲକିତ ହୋଇ ଉଠିଛ ଯେ ରାଜା କନକାକ୍ଷଙ୍କ ପୁତ୍ର କନ୍ୟା ଯେମିତି ଉଦ୍ଧାର ହୋଇ ସାରିଲେଣି ! ମୋତେ ଏଇଟା ଆଶ୍ଚର୍ଯ୍ୟ ଲାଗୁଛି ।"



ଜୟଶୀଳଙ୍କ କଥା ଶୁଣି ତନ୍ତ୍ର ସାଧକଙ୍କ ଉତ୍ସାହରେ ହଠାତ୍ ଭଟ୍ଟା ପଡ଼ିଗଲା । ସେ ତ୍ରିଶୂଳ ଦ୍ୱାରା ମାଟିରେ ଆଘାତ କରି କହିଲେ, "ଜୟଶୀଳ ! ତମେ କ'ଣ ଭାବେ ଭାବୁଛ ଆମେ ରାଜପୁତ୍ର ରାଜକନ୍ୟାଙ୍କ ସନ୍ଧାନ ପାଇବା ନାହିଁ ? ବଣରେ ବୁଲୁଁ ବୁଲୁଁ ହିଁ ଆମେ ବୁଢ଼ା ହୋଇଯିବା ?"

"ବଣରେ ନ ବୁଲି ମହାନଗରୀରେ ରହିଲେ ବି ଆମକୁ ବୁଢ଼ା ହେବାକୁ ପଡ଼ିବ । ବର୍ତ୍ତମାନ ଭାବିବାର କଥା ହେଲା, ଏ ଦୁଇ ବିଦେଶ ମଣିଷ ଏ ବଣକୁ ଆସିଛନ୍ତି କାହିଁକି ? ଦ୍ୱିତୀୟରେ, ସେମାନଙ୍କୁ ବନ୍ଦୀ ବନାଇବାର ଉପାୟ ବା କ'ଣ ?" ଜୟଶୀଳ ଶାନ୍ତ ଭାବରେ କହିଲେ ।

ତନ୍ତ୍ର ସାଧକ ନୀରବରେ କିଛି ସମୟ ଠିଆ ହୋଇ ରହି ତ୍ରିଶୂଳ ତଳେ ପକାଇ ଦେଇ କହିଲେ, "ଠିକ୍ କଥା । ତୁମେହିଁ ସେମାନଙ୍କୁ ବନ୍ଦୀ କରିବାର କୌଣସି ନା କୌଣସି କୌଶଳ ବାହାର କର ।"

ଜୟଶୀଳ କହିଲେ, "ବେଶ୍ । କିନ୍ତୁ ତମେ ତ୍ରିଶୂଳ ତଳେ ଫୋପାଡ଼ି ଦେଲ କାହିଁକି ? ତମେ କ'ଣ ଏଣିକି ଅସ୍ତ୍ର ବଦଳରେ ନିଜ ମନ୍ତ୍ରଶକ୍ତି ଉପରେହିଁ ପୁରା ନିର୍ଭର କରିବ ?"

ତନ୍ତ୍ର ସାଧକ ବିମର୍ଷ କଣ୍ଠରେ କହିଲେ, "ମନ୍ତ୍ର ଶକ୍ତି ଉପରେ ମୋର ପୁରା ସିଦ୍ଧି ହୋଇ ଥିଲେ ତ କଥା ନ ଥିଲା ।" ତା'ପରେ ସେ ତ୍ରିଶୂଳ ପୁଣି ଉଠାଇ ନେଇ କହିଲେ, "ମୋ ସାଧନାରେ ସିଦ୍ଧି ହେବା ପୂର୍ବରୁହିଁ ମହାକାଳଙ୍କର ଜଣେ ସେବକ କାଳ ମୋ ଜୀବନ ନେବାକୁ ବସିଥିଲା । ଶ୍ମଶାନର ସେ କଥା ତମର ମନେ ନାହିଁ ?"

"ହଁ, ହଁ । ଆଜି କାଲି ପରିବର୍ତ୍ତେ ମାୟା-

ସରୋବରେଶ୍ୱର ଆମ ପ୍ରାଣ ନେବାକୁ ଚେଷ୍ଟା କରୁଛି ।" ଏହା କହି ଜୟଶୀଳ ବାମନ ସେନାପତି ଆଡ଼କୁ ଅନାଇ କହିଲେ, "ସେନାପତି, କିଛି ସୈନ୍ୟ ଧରି ତମେ ଆମକୁ ଅନୁସରଣ କରିବା ଦରକାର ।"

"ଆଜ୍ଞା ! ମୁଁ ତ ଆପଣଙ୍କ ଆଦେଶକୁ ପ୍ରତୀକ୍ଷା କରିଛି ।" ଏହା କହି ସେନାପତି ଅଦୂରରେ ଦଣ୍ଡାୟମାନ ବାମନ ବାହିନୀକୁ ପାଖକୁ ଆସିବାକୁ ଇଙ୍ଗିତ ଦେଲା ।

ତା'ପରେ ସମସ୍ତେ ମିଳି ପାହାଡ଼ ଆଡ଼କୁ ଚାଲିଲେ । ସେମାନେ କିଛି ବାଟ ଯାଇଛନ୍ତି, ଡାହାଣ ପଟ ବଣରୁ ନରବାନରର ଭୟଙ୍କର ହୁଙ୍କାର ଶୁଭିଲା । ସମସ୍ତେ ଅଟକି ଗଲେ ଓ ତା'ପରେ ସେହି ଦିଗକୁ ଚାଲିଲେ । ଅଳ୍ପ ସମୟ ପରେ ସେମାନେ ନରବାନରକୁ ଦେଖି ପାରିଲେ । ତା' କାନ୍ଧରେ ଗୋଟାଏ ବିଚିତ୍ର ପୋଷାକ ପରିହିତ ମଣିଷ ନିର୍ଜୀବ ହୋଇ ପଡ଼ି ରହିଥିଲା ।

"ଜୟଶୀଳ, ଆମେ ଯେଉଁ ଦୁଇଜଣଙ୍କୁ ବନ୍ଦୀ କରି ମାୟାସରୋବରେଶ୍ୱରର ରହସ୍ୟ ଜାଣିବାକୁ ଯୋଜନା କରିଥିଲୁଁ, ମନେ ହୁଏ ତହିଁରୁ ଜଣେ ନରବାନରର ହାତରେ ପ୍ରାଣ ଦେଇଛି । କିନ୍ତୁ ଅନ୍ୟ ଜଣକ ?" ତନ୍ତ୍ର ସାଧକ କହିଲେ ।

ଜୟଶୀଳ ଟିକିଏ ନୀରବ ରହି କହିଲେ "ଅନ୍ୟ ଜଣକ କୃପାଣଜିତ୍ ହାତରେ ପ୍ରାଣ ଦେଇ ନାହିଁ ତ ?"

"ତା'ହେଲେ ତ କୃପାଣଜିତ୍‌ର ସାହସ ଓ ବଳର ପ୍ରଶଂସା କରିବାକୁ ହେବ । ତା' ପୋଷା ନରବାନର ଜଣକୁ ଖତମ୍ କଲା ବେଳକୁ ସେ ନିଜେ ଅନ୍ୟ ଜଣକୁ··· ।"

ତନ୍ତ୍ର ସାଧକଙ୍କ ବାକ୍ୟ ପୂରା ନ ହେଉଣୁ ଜଳାଶ୍ୱ ଆରୋହିତ ସର୍ପନଖର ଚିତ୍କାର ଶୁଭିଲା, "ସର୍ପସ୍ୱର ! ତୁମେ ଗଲ କୁଆଡ଼େ ? ସର୍ପସ୍ୱର ! ତମ ସ୍ୱର ଶୁଭୁ ନାହିଁ କାହିଁକି ?"

ଜୟଶୀଳ ହାତ ଟେକି ସମସ୍ତଙ୍କୁ ସତର୍କ କରି ଦେଲେ ଓ କହିଲେ, "ତମେମାନେ ଲୁଚି ଯାଅ । ଯେକୌଣସି ଉପାୟରେ ହେଉ ନା କାହିଁକି ଏ ଲୋକଟିକୁ ବନ୍ଦୀ କରିବାକୁ ପଡ଼ିବ !"

(କ୍ରମଶଃ)





# ଶିଳ୍ପୀର ଉଚ୍ଚାଭିଳାଷ

**ରା**ଜା ବିକ୍ରମାର୍କ ସେହି ଝଡ଼ ରାତିରେ ଭୂତ-ପ୍ରେତଙ୍କ ଅଟ୍ଟହାସ୍ୟ ଓ ଘନ ଘନ ପ୍ରଚଣ୍ଡ ବଜ୍ରପାତ ସତ୍ତ୍ୱେ ଅବିଚଳ ଭାବରେ ପୁନର୍ବାର ବୃକ୍ଷଟି ପାଖକୁ ଫେରି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣି ତାକୁ ନିଜ କାନ୍ଧରେ ପକାଇ ଶୁନ୍‌ଶାନ୍ ଶ୍ମଶାନ ମାର୍ଗରେ ଚାଲିବାକୁ ଆରମ୍ଭ କରନ୍ତେ ଶବସ୍ଥିତ ବେତାଳ କହିଲା, "ରାଜା ! ତୁମ୍ଭେ କେଉଁ ପ୍ରକାର ଆଦର୍ଶ ଦ୍ୱାରା ଅନୁପ୍ରାଣିତ ହୋଇ ଏଭଳି ଦୁଃସାହସିକ କାର୍ଯ୍ୟରେ ବ୍ରତୀ ହୋଇଛ ଜାଣେନା । କିନ୍ତୁ ଅନେକ ସମୟରେ ଆଦର୍ଶ ମହତ୍ ହୋଇଥିଲେ ମଧ୍ୟ କୌଣସି ନା କୌଣସି ଅଜ୍ଞାତ କାରଣରୁ ଦେବତାମାନେ ତାହା ପୂରଣ ହେବାକୁ ଦିଅନ୍ତି ନାହିଁ । ଉଦାହରଣ ସ୍ୱରୂପ ଧର ସୁଶର୍ମା କଥା । କହୁଛି ସେ କାହାଣୀ, ଶୁଣ । ଶୁଣିଲେ ଶ୍ରମଭାର ଲାଘବ ମନେ ହେବ ।"

ବେତାଳ ଗପି ଚାଲିଲା : ପ୍ରାଚୀନ କାଳର

---

ବେତାଳ କଥା

---

କଥା । ଜଳନ୍ଧର ନଗରୀରେ ବାସ କରୁଥିଲା ସୁଶର୍ମା । ବାଳକ କାଳରୁ ସେ ମୂର୍ତ୍ତି ଗଠନ ଦେଖିବାକୁ ଖୁବ୍ ଭଲ ପାଉଥାଏ । ନଗରୀର କୌଣସି ଶିଳ୍ପୀ କୌଣସି ଦେବ ଦେବୀଙ୍କ ମୂର୍ତ୍ତି ଗଠନରେ ହାତ ଦେଇଛନ୍ତି ଶୁଣିଲେ ସେ ଯାଇ ତାଙ୍କ ପାଖରେ ପହଞ୍ଚିଯାଏ ଓ ମନଧ୍ୟାନ ଦେଇ ସବୁ ଦେଖେ ।

ଦିନେ ଜଣେ ଶିଳ୍ପୀ ତାକୁ ପଚାରିଲେ, "ତୁ କାହିଁକି ଏତେ ସମୟ ନଷ୍ଟ କରି ଆମ କାମକୁ ଚାହିଁ ରହୁଛୁ ?" ସୁଶର୍ମା କହିଲା, "ମୋର ଏ ବିଦ୍ୟା ଶିଖିବାକୁ ଖୁବ୍ ଆଗ୍ରହ ହେଉଛି ।" ଶିଳ୍ପୀ ଖୁସି ହୋଇ ତାକୁ ଯେତେଦୂର ସମ୍ଭବ ଶିଳ୍ପବିଦ୍ୟା ଶିଖାଇ ସାରି କହିଲେ, "ରାଜା ଗୋଟିଏ ଶିଳ୍ପ ମହାବିଦ୍ୟାଳୟ ପ୍ରତିଷ୍ଠା କରିଛନ୍ତି । ଏଥର ସେହିଠାରେ ଯାଇ ଶିଖ ।"

ସୁଶର୍ମା ଯାଇ ଶିଳ୍ପ ମହାବିଦ୍ୟାଳୟର ଅଧ୍ୟକ୍ଷଙ୍କ ସହ ସାକ୍ଷାତ୍ କରି ଉଚ୍ଚତର ଶିଳ୍ପବିଦ୍ୟା ଶିଖିବାର ଅଭିଳାଷ ପ୍ରକାଶ କଲା । କିନ୍ତୁ ଅଧ୍ୟକ୍ଷ କହିଲେ, "ଯେଉଁମାନେ କାରିଗର ଜାତିର ପିଲା ତାଙ୍କୁହିଁ କେବଳ ଏଠାରେ ଭର୍ତ୍ତି କରାହୁଏ । ତୁମ ପାଇଁ ଏଠାରେ ସ୍ଥାନ ନାହିଁ ।"

ସୁଶର୍ମା କିନ୍ତୁ ହତୋତ୍ସାହ ନ ହୋଇ ରାଜାଙ୍କୁ ଯାଇ ଭେଟିଲା ଓ ନିଜ ଆଗ୍ରହ କଥା ନିବେଦନ କଲା ।

ରାଜା ତା'ର ପ୍ରବଳ ଆଗ୍ରହ ଦେଖି ସଦୟ ହେଲେ ଓ ପଚାରିଲେ, "ଶିଳ୍ପ ବିଦ୍ୟା ଶିଖିସାରି ତୁ କରିବୁ କ'ଣ ?"

"ମୁଁ ତାକୁ ଜନସାଧାରଣଙ୍କ ସେବାରେ ଲଗାଇବି ।" ସୁଶର୍ମା ଉତ୍ତର ଦେଲା ।

ରାଜା ଖୁସି ହୋଇ ନିୟମ ଭଙ୍ଗ କରି ତାକୁ



ମହାବିଦ୍ୟାଳୟରେ ଭର୍ତ୍ତି ହେବାକୁ ଅନୁମତି ଦେଲେ ଓ ବୃତ୍ତିର ବ୍ୟବସ୍ଥା କରି ଦେଲେ ।

ସୁଶର୍ମା ମନୋଯୋଗ ସହକାରେ ଅଧ୍ୟୟନ କଲା । ପାଞ୍ଚବର୍ଷ ବିତିଗଲା । ସେ ସମସ୍ତ ପରୀକ୍ଷାରେ ସାଫଲ୍ୟ ସହକାରେ ଉତ୍ତୀର୍ଣ୍ଣ ହେଲା ଓ ସ୍ୱର୍ଣ୍ଣପଦକ ଲାଭ କଲା ।

ତା'ପରେ ସେ ଯାଇ ରାଜାଙ୍କୁ ଭେଟି କହିଲା, "ମହାରାଜ ! ଏ ରାଜ୍ୟରେ ଯେତେଦୂର ଶିଳ୍ପ-ବିଦ୍ୟା ଶିକ୍ଷା ସମ୍ଭବପର, ତାହା ମୁଁ ଶିଖି ସାରିଲି । କିନ୍ତୁ ଶିଳ୍ପ ବିଦ୍ୟା ବ୍ୟାପକ । ମୋର ଆହୁରି ଅଧିକ ଶିଖିବାକୁ ଇଚ୍ଛା । ଆପଣ ମୋତେ ଦେଶ ଭ୍ରମଣରେ ଯିବାକୁ ଅନୁମତି ଦିଅନ୍ତୁ ।"

ରାଜା ଏ ପ୍ରସ୍ତାବରେ ସମ୍ମତ ହେଲେ ଏବଂ ଭ୍ରମଣ ଖର୍ଚ୍ଚ ବାବଦରେ ସୁଶର୍ମାକୁ ପ୍ରଚୁର ସ୍ୱର୍ଣ୍ଣମୁଦ୍ରା ଦେଲେ । ସୁଶର୍ମା ଗୋଟିଏ ପରେ ଗୋଟିଏ ଦେଶ ଭ୍ରମଣ କରି ଶିଳ୍ପବିଦ୍ୟାର ବହୁ କଳା କୌଶଳ ସମ୍ପର୍କରେ ଜ୍ଞାନ ଅର୍ଜନ କଲା ।

ଦିନେ ସ୍ୱଦେଶକୁ ଫେରିବା ପଥରେ ସେ ଗୋଟିଏ ବଣ ଭିତରେ ଦେଖିଲା ଅଭିନବ ଏକ ମନ୍ଦିର । ସେ ମନ୍ଦିରର ଶିଳ୍ପ କର୍ମ ଏପରି ବିଚିତ୍ର ଯେ ସୁଶର୍ମା ଜୀବନରେ ସେଭଳି ନମୁନା ଦେଖି ନ ଥିଲା । ସେ ଆଉ ଆଗକୁ ନ ଯାଇ ସେଇଠାରେ ରହି ସେ ଶିଳ୍ପ ଅନୁଧ୍ୟାନ କରିବାକୁ ଲାଗିଲା । ସେ ତାକୁ ଯେତିକି ଦେଖିଲା, ସେଥି ପ୍ରତି ତା' ଆଗ୍ରହ ସେତିକି ବଢିଲା ।

କିଛିଦିନ ସେ ସେହିପରି ଭାବରେ ବଣରେ ରହିବା ପରେ ଦିନେ ହଠାତ୍ ସେ ଜଣେ ଆଗନ୍ତୁକଙ୍କୁ ଭେଟିଲା । ଆଗନ୍ତୁକ ସୁଶର୍ମାକୁ ସେ ବଣ ଭିତରେ କ'ଣ କରୁଛନ୍ତି ବୋଲି ପଚାରିବାରୁ ସୁଶର୍ମା କହିଲା, "ମୁଁ ଶିଳ୍ପ ବିଦ୍ୟାର ସବୁ ତତ୍ତ୍ୱ





ଅଧ୍ୟୟନ କରିଛି । କିନ୍ତୁ ଏଭଳି ଅଦ୍ଭୁତ ଶିଳ୍ପାକୃତି କେଉଁଠାରେ ଦେଖି ନାହିଁ । ଏହା କେଉଁ ଯୁଗର, ସେକଥା ମଧ୍ୟ ମୁଁ ବୁଝିପାରୁ ନାହିଁ ।"

"ଏହା ତ୍ରେତୟା ଯୁଗର ଶିଳ୍ପ । ଏହାର ରହସ୍ୟ ଏ କଳିଯୁଗର ପୃଥିବୀରେ କେହି ଜାଣନ୍ତି ନାହିଁ ।" ଆଗନ୍ତୁକ କହିଲେ ।

"ତେବେ କ'ଣ ଏହାର କୌଶଳ ମୁଁ ଶିଖି ପାରିବି ନାହିଁ ?" ସୁଶର୍ମା ଉତ୍ତର ଦେଲା ।

"ତୁମେ ଏହାକୁ ଶିଖିଲେ ଲାଭ କ'ଣ ହେବ ?" ଆଗନ୍ତୁକ ପଚାରିଲେ ।

ମୁଁ ଏ ଅପୂର୍ବ ଶିଳ୍ପରେ ସମସ୍ତଙ୍କୁ ଚମତ୍କୃତ କରି ଦେଇ ପାରନ୍ତି ।" ସୁଶର୍ମା କହିଲା ।

"ତେବେ ମୋ ସହ ଚାଲ । ମୁଁ ଏ ଶିଳ୍ପର ପୁରୋଧାଙ୍କ ସହ ତୁମର ପରିଚୟ କରାଇ ଦେବି ।" ଏହା କହି ଆଗନ୍ତୁକ ସୁଶର୍ମାକୁ ପାତାଳପୁରୀକୁ ନେଇଗଲେ । ଆଗନ୍ତୁକ ନିଜେ ଥିଲେ ଏକ ମାନବବେଶୀ ଦାନବ । ସେ ସୁଶର୍ମା ସହ ଦାନବ ଶିଳ୍ପୀ ମୟଙ୍କର ପରିଚୟ କରାଇ ଦେଲେ ।

ମୟ କହିଲେ, ଏ ଶିଳ୍ପ ଶିଖିବା ପାଇଁ ଅନ୍ତତଃ ପଚିଶ ବର୍ଷ ସମୟ ଲାଗିବ । ସୁଶର୍ମା ସେତିକି ସମୟ ଦେବା ପାଇଁ ରାଜି ହୋଇ ପାତାଳପୁରୀରେ ରହିଲା ଓ ଶିଳ୍ପବିଦ୍ୟା ଶିଖିଲା । ପଚିଶ ବର୍ଷ ପରେ ସେ ପାତାଳପୁରୀରୁ ବାହାରି ପୁଣି ସ୍ୱଦେଶକୁ ଯାତ୍ରାରମ୍ଭ କଲା । ବଣ ଭିତରେ ଯାଉଥିବା ବେଳେ ଗୋଟାଏ ସ୍ଥାନରେ ସେ ଦେଖିଲା ଗୋଟିଏ ଜାତିର ସୁନ୍ଦର ପଥର । ସେ ଦୁର୍ଲଭ ପଥରରେ ସେ ତ୍ରେତାଯୁଗର ଶିଳ୍ପ ନିର୍ମାଣ ଆରମ୍ଭ କରିଦେଲା ।

ଦିନେ ସେ ପଥରେ ଯାଉଥିଲେ ସ୍ୱର୍ଗର ଶିଳ୍ପୀ ବିଶ୍ୱକର୍ମା । କଳିଯୁଗର ଜଣେ ମାନବ ତ୍ରେତୟା ଯୁଗର ଶିଳ୍ପ ଗଢ଼ୁଥିବାର ଦେଖି ତାଙ୍କର ବିସ୍ମୟର ସୀମା ରହିଲା ନାହିଁ ।

ସେ ସୁଶର୍ମାଙ୍କ ନିକଟକୁ ଯାଇ ତା' ସମ୍ପର୍କରେ ସବୁ ଜାଣିଲେ । "ଆପଣ କିଏ ?" ସୁଶର୍ମା ପଚାରିଲେ । ସେ କହିଲେ, "ମୁଁ ବିଶ୍ୱକର୍ମା !"

ସୁଶର୍ମା ବିଶ୍ୱକର୍ମାଙ୍କ ଚରଣରେ ପ୍ରଣିପାତ ପୂର୍ବକ କହିଲା, "ଆପଣଙ୍କୁ ଭେଟିବାର ଏ ସୁଯୋଗ ପୂର୍ବଜନ୍ମର କର୍ମଫଳରୁହିଁ ମିଳିଲା । ମୁଁ ମାନବ ଶିଳ୍ପ ଓ ଦାନବ ଶିଳ୍ପ ଶିଖିଛି । ମୋତେ ଦେବଶିଳ୍ପ ଶିଖାଇ ଦିଅନ୍ତୁ । ଆପଣଙ୍କ ଶିଷ୍ୟ

କରିନେଇ ମୋତେ ଧନ୍ୟ କରନ୍ତୁ । ସେ ପାଇଁ ଶହେ ବର୍ଷ ଲାଗିଲେ ବି ଲାଗୁ ।"

ବିଶ୍ୱକର୍ମା ପ୍ରଥମେ ନୀରବରେ ସୁଶର୍ମାକୁ ଲକ୍ଷ୍ୟ କରି ତା'ପରେ ଭର୍ତ୍ସନା ସୂଚକ କଣ୍ଠରେ କହିଲେ, "ହତଭାଗା ! ତୁ ଯାହା ଯେତିକି ଜାଣିଛୁ, ସେତିକି ମଧ୍ୟ ଭୁଲିଯିବା ଆବଶ୍ୟକ !" ଏହା କହି ସେ ଅନ୍ତର୍ହିତ ହୋଇଗଲେ । ତାଙ୍କ ଅଭିଶାପ ଯୋଗୁ ସୁଶର୍ମା ନିଜର ଶିଳ୍ପଜ୍ଞାନ ହରାଇଲା ।

ବେତାଳ ଗଳ୍ପଟି କହିସାରି ପଚାରିଲା, "ରାଜା ! ବିଶ୍ୱକର୍ମା କାହିଁକି ସୁଶର୍ମା ଉପରେ କ୍ରୁଦ୍ଧ ହେଲେ ? ସୁଶର୍ମା ଦାନବ ଶିଳ୍ପ ଶିଖି ନେଇଥିବା କ'ଣ ତା'ର କାରଣ, ନା ଦେବ-ଶିଳ୍ପ ଶିଖିବା ପାଇଁ ତାର ଇଚ୍ଛା ତା'ର କାରଣ ? ତୁମେ ଯଦି ଏ ପ୍ରଶ୍ନର ଉତ୍ତର ଜାଣିକରି ମଧ୍ୟ ନୀରବ ରହିବ, ତେବେ ତୁମ ଶିର ହେବ ସ୍କନ୍ଧଚ୍ୟୁତ ।"

ବିକ୍ରମାର୍କ ଉତ୍ତର ଦେଲେ : "ଯେତେବେଳେ ସୁଶର୍ମା ତାଙ୍କ ଶିଳ୍ପୀ ଜୀବନ ଆରମ୍ଭ କଲା, ସେତେବେଳେ ଶିଳ୍ପ ଶିକ୍ଷା ପାଇଁ ଥିଲା ତା'ର ସ୍ୱାଭାବିକ ଉତ୍ସାହ । ତାହା ତା'ର ବିକାଶରେ ସହାୟତା କରିଥିଲା । ନିଜ ପ୍ରତିଭାକୁ ସେ ଜନକଲ୍ୟାଣରେ ନିୟୋଗ କରିବ ବୋଲି ସ୍ଥିର କରିଥିଲା । କିନ୍ତୁ ପରେ ପରେ ତା'ର ଉଚ୍ଚାଭିଳାଷ ବଢ଼ିଗଲା । ସେ ପୃଥିବୀକୁ ଚମତ୍କୃତ କରିବାକୁ ଚାହିଁଲା । ସେ ଏପରି ଆତ୍ମବିସ୍ମୃତ ହୋଇଥିଲା ଯେ ପାତାଳରେ ପଚିଶ ବର୍ଷ ବିତାଇବାପରେ ନିଜ ବୟସ କେତେ ହେଲାଣି ସେକଥା ଭୁଲିଯାଇ ଓ କେତେ ଦିନ ବଞ୍ଚିବ ସେକଥା ଚିନ୍ତା ନ କରି ବିଶ୍ୱକର୍ମାଙ୍କଠାରୁ ଆହୁରି ଶହେ ବର୍ଷ ଶିଳ୍ପ ଶିକ୍ଷା କରିବାକୁ ପ୍ରସ୍ତୁତ ଥିଲା । ବିଶ୍ୱକର୍ମା ଦେଖିଲେ ଯେ ତା'ର କୌତୂହଳ-ସର୍ବସ୍ୱତା ତା'ର ଯଥାର୍ଥ ବିକାଶରେ ବାଧା ଦେଉଛି ଓ ତାକୁ ମୂଢ଼ ବନାଇ ଦେଉଛି । ତେଣୁ ସେ ବିରକ୍ତ ହୋଇ ଅଭିଶାପ ଦେଲେ ।"

ରାଜା ଉତ୍ତର ଦେଇ ସାରିବା ମାତ୍ରେ ଶବ ସହିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁଣି ଶ୍ମଶାନର ଅନ୍ୟ ପ୍ରାନ୍ତରେ ସ୍ଥିତ ବୃକ୍ଷ ଡାଳରେ ଯାଇ ଝୁଲି ପଡ଼ିଲା । (କଳ୍ପିତ)





# ଗଛର ମାଲିକାନା

ଦୀନନାଥଙ୍କ ମୃତ୍ୟୁ ହେଲା; ସେ ଛାଡ଼ିଗଲେ କିଛି ଜମିଜମା, ସ୍ତ୍ରୀ ଓ ଦୁଇ ପୁଅ । ବଡ଼ ପୁଅ କାଶୀନାଥ ସ୍ଥାନୀୟ ଜମିଦାରଙ୍କ ସିରସ୍ତାରେ କାମ କରି ଦୁଇ ପଇସା ରୋଜଗାର କରୁଥାଏ । ସାନ ପୁଅ ନିଶୀଥର ବୟସ ବେଶୀ ହୋଇ ନ ଥିଲା । ସେ ପାଠ ପଢ଼ୁଥାଏ ।

କାଶୀନାଥର ପ୍ରକୃତି ଥିଲା କ୍ରୂର । ସେ ସମ୍ପତ୍ତି ଭାଗ କଲାବେଳେ ନିଜେ ବେଶୀ ମାରି ନେବାକୁ ଉତ୍ସୁକ ଥାଏ । ତେବେ ଉପରକୁ ଦେଖିଲେ ସେ ଥାଏ ବେଶ୍ ଭଦ୍ର ।

ସମ୍ପତ୍ତି ଭାଗବେଳେ ଉପସ୍ଥିତ ଥିବା ଭଦ୍ରଲୋକମାନଙ୍କୁ ସେ କହିଲା, "ମୋ ମା ନିଶୀଥକୁ ବେଶୀ ସ୍ନେହ କରନ୍ତି । ମା ତା' ପାଖରେ ରହି ତା'ର ତତ୍ତ୍ୱ ନେବା ନିଶୀଥ ମଧ୍ୟ ଲୋଡ଼ିବା ସ୍ୱାଭାବିକ । ତେଣୁ ମା ତା' ପାଖରେ ରହନ୍ତୁ । ମୁଁ ତାଙ୍କ ଭରଣ ପୋଷଣ ଦିଗରେ ଯାହା ଉଚିତ ସେଭଳି ସାହାଯ୍ୟ ଦେବି ।"

ସେମାନଙ୍କ ଘର ପଛପଟେ ଗୋଟାଏ ସେଓ ଗଛ ଥିଲା । ତା' ଫଳ ଥିଲା ଅତ୍ୟନ୍ତ ସୁସ୍ୱାଦୁ । ତା' ରଙ୍ଗ ଓ ବାସନା ଥିଲା ଲୋଭନୀୟ । ଦୁଇ ଭାଇ ବାଣ୍ଟି ନେଇଥିବା ଜମିର ଠିକ୍ ମଧ୍ୟ ଭାଗରେ ଗଛଟି ଠିଆ ହୋଇଥାଏ । କାଶୀନାଥର ତ ଉପାର୍ଜନର ପନ୍ଥା ଥିଲା; କିନ୍ତୁ ନିଶୀଥର ନ ଥିଲା । ତେଣୁ ଗ୍ରାମବାସୀମାନେ କହିଲେ ଫଳ ଗଛଟି ନିଶୀଥ ନେଉ । ସେ ଫଳ ବିକିରୁ ଯେଉଁ ଦୁଇ ପଇସା ମିଳିବ, ସେଥିରେ ତା'ର ବହୁତ ଉପକାର ହେବ ।

କିନ୍ତୁ କାଶୀନାଥ ସେଥିରେ ସମ୍ମତ ହେଲା ନାହିଁ । ଗ୍ରାମବାସୀମାନେ କହିଲେ, "ବେଶ୍, ଅନ୍ତତଃ ଯେତିକି ଫଳ ଆମଦାନି ହେବ,

ଏ. ସି. ସରକାର, ଯାଦୁକର

ସେତକ ଦୁହେଁ ଦୁଇଭାଗ କରିନେବା ଠିକ୍ ହେବ ।" କିନ୍ତୁ କାଶୀନାଥ ରାଗିଯାଇ କହିଲା, "ଫଳ ଦୁଇ ଭାଗ କରିବା ଅପେକ୍ଷା ଗଛଟିକୁ ଦୁଇ ଗଡ଼ କରି ତା କାଠ ବାଣ୍ଟି ନେବା ଭଲ ହେବ ।"



ଗ୍ରାମବାସୀମାନେ ବିରକ୍ତ ହେଲେ । କେହି କେହି କହିଲେ, "ଏଭଳି ସ୍ୱାର୍ଥପର ଓ ଝଗଡ଼ାଖୋରର ଲୋକକୁ ଗ୍ରାମରେ ବାସନ୍ଦ କଲେ ଯାଇ ଠିକ୍ ହେବ ।"

କିନ୍ତୁ ନିଶୀଥ କହିଲା, "ନା, ଆପଣମାନେ ସେଭଳି କିଛି କରନ୍ତୁ ନାହିଁ । ମୋର ବିଶ୍ୱାସ ଅଛି, ଭଗବାନ ମୋର ସହାୟତା କରିବେ । ମୁଁ ଯଦି ନିଷ୍ଠା ସହ ଶ୍ରମ କରେଁ, ତେବେ ମୋର କୌଣସି ଅଭାବ ଅସୁବିଧା ରହିବ ନାହିଁ ।"

ଭଦ୍ରଲୋକମାନେ ନିଶୀଥର କଥା ଶୁଣି ଖୁସି ହେଲେ ଓ ତା'ର ଶୁଭେଚ୍ଛା କାମନା କରି ବିଦାୟ ନେଲେ ।

ଦିନ କଟିଯିବାକୁ ଲାଗିଲା । ନିଜ ଭାଗରେ ପଡ଼ିଥିବା ଜମିରୁ ଯେତିକି ଆୟ ହେଉଥାଏ, ନିଶୀଥ ସେଥିରେ କୌଣସି ପ୍ରକାରେ ଚଳୁଥାଏ । ସେ ମନ ଦେଇ ପାଠ ପଢ଼ୁଥାଏ । ବିଦ୍ୟାଳୟରୁ ଭଲ ଭାବରେ ଉତ୍ତୀର୍ଣ୍ଣ ହୋଇ ସେ ସହରର କଲେଜରେ ଭର୍ତ୍ତି ହେଲା । ଗ୍ରାମରୁ ସହର ଚାରି ମାଇଲ ଦୂର । ସବୁ ଦିନେ ତାକୁ ଚାଲି ଚାଲି ଯିବାକୁ ହୁଏ । ସାଇକେଲ୍‌ଟିଏ ହେଲେ ସୁବିଧା ହୁଅନ୍ତା ଯେ କିନ୍ତୁ ସେ ପାଇଁ ପଇସା କାହିଁ ?

ସେଉ ଫଳିବାର ସମୟ ଆସିଲା । ଗଛ ସେଉରେ ଭରିଗଲା । ସେଥିରୁ ଅଧା ଯଦି ତାକୁ ମିଳନ୍ତା, ତେବେ ତା'ର ବିକ୍ରି ପଇସାରେ ସେ ସାଇକେଲ୍ କିଣି ପାରନ୍ତା । ନିଶୀଥ ସେ କଥା ମନେ ମନେ ଭଗବାନଙ୍କୁ ଜଣାଇଲା ।

ସପ୍ତାହେ ପରେ ହଠାତ୍ କାଶୀନାଥ ବେମାର ପଡ଼ିଲା । ଡାକ୍ତରମାନେ ଯଥାବିଧି ପରୀକ୍ଷା କରି ମଧ୍ୟ ରୋଗ ଠିକ୍ ଠଉରାଇ ପାରିଲେ ନାହିଁ । ଜୀବନ ଓ ମୃତ୍ୟୁ ଭିତରେ କାଶୀନାଥ ଜୁଝୁଥାଏ ।



ନିଶୀଥ ଭଗବାନଙ୍କୁ ଡାକିଲା—ଭାଇ ଯେପରି ଭଲ ହୋଇଯାଉ ।

କାଶୀନାଥ କ୍ରମେ ଆରୋଗ୍ୟ ଲାଭ କଲା । କିନ୍ତୁ ସେ ବଡ଼ ଦୁର୍ବଳ ହୋଇ ପଡ଼ିଥାଏ । ସେ ମାନସିକ ଶକ୍ତି ମଧ୍ୟ ହରାଇଥାଏ ।

ସେ ଠିକିଏ ସୁସ୍ଥ ହେବାରୁ ଗ୍ରାମବାସୀମାନେ ତାକୁ କହିଲେ, "ଦେଖ କାଶୀନାଥ, ତମେ ମରୁ ମରୁ ଭଗବାନଙ୍କ କୃପାରୁ ବଞ୍ଚି ଗଲ । ଏଥର ତମର ସଦ୍‌ବୁଦ୍ଧି ହେଉ । ସେ ଗଛର ଅଧା ଆମଦାନି ତମେ ନିଶୀଥକୁ ଦିଅ । ତମ ମା' ବି ସେ ଫଳ ଖାଇ ତୃପ୍ତ ହେବେ ।"

କିନ୍ତୁ କ୍ରୂରତା ସହଜରେ ଯାଏ ନାହିଁ । "ଯେଉଁ ଭଗବାନ ମୋତେ ମୁକ୍ତ କଲେ, ସେହି ଭଗବାନ ମୋତେ କହିଲେ ମୁଁ ଦେବି !" କାଶୀନାଥ ଉତ୍ତର ଦେଲା ।

ଭଦ୍ର ଲୋକମାନଙ୍କ ଗହଣରେ ଥିଲା ରାଜକୁମାର, ନିଶୀଥର ସହପାଠୀ । ସେ ହଠାତ୍ ପଚାରିଲା, "ଭଗବାନ ଯଦି କୌଣସି ଇଙ୍ଗିତ ଦେବେ, ତେବେ ତମେ ସେ ଅନୁସାରେ କାମ କରିବ ତ ?"

"ଭଗବାନ ଇଙ୍ଗିତ ଦେଲେ ମୁଁ ତାକୁ ସ୍ୱୀକାର ନ କରିବାର ପ୍ରଶ୍ନ ଉଠୁଛି ?" କାଶୀନାଥ କହିଲା ।

"କିନ୍ତୁ ତମେ ଏକଥା ଶପଥ କରି କୁହ ।" ରାଜକୁମାର ଜିଦ୍ କଲା । କାଶୀନାଥ ନିଜ ପୁଅର ଦୋହି ଦେଇ ଶପଥ କଲା ।

ରାଜକୁମାର ମନରେ କ'ଣ ଅଛି, ସେକଥା ଭଦ୍ରଲୋକମାନେ ବୁଝି ପାରିଲେ ନାହିଁ । ସମସ୍ତେ କୌତୁହଳୀ ହୋଇ ରହିଲେ ଓ ବିଦାୟ ନେଲେ ।

ରାଜକୁମାର ଯାଇ ନିଶୀଥକୁ କହିଲା, "ତୋ ଭାଇ ଯଦି ନିଜ କଥା ରକ୍ଷା କରିବେ, ତେବେ ଅଧା ସେଉ ତୋତେ ମିଳିବ । ଦେଖାଯାଉ ।"

"ସବୁ ମଣିଷର ପରିବର୍ତ୍ତନ ହୁଏ । ମୋ ଭାଇର ପରିବର୍ତ୍ତନ ନ ହେବ ବୋଲି କିଏ କହିବ ?" ନିଶୀଥ କହିଲା ।

"ତେବେ ସେ ଢଗରେ ଆମକୁ ଟିକିଏ ବୁଦ୍ଧି ଖର୍ଚ୍ଚ କରିବାକୁ ପଡ଼ିବ । ମୁଁ ଅବଶ୍ୟ ତୋତେ କିଛି କରିବାକୁ କହୁ ନାହିଁ । ମୁଁ ମୋ ବନ୍ଧୁ ନବକିଶୋର ସହ ପରାମର୍ଶ କରେ । ସେ ଯାଦୁବିଦ୍ୟା ଜାଣେ । ହୁଏତ ସାହାଯ୍ୟ କରି ପାରେ ।" ରାଜକୁମାର କହିଲା ।

ଦୁଇ ଦିନ ପରେ ଭଦ୍ରଲୋକମାନେ କାଶୀନାଥ ଘର ସେଇ ଗଛ ତଳେ ଏକତ୍ରିତ ହେଲେ ।

ରାଜକୁମାର କହିଲା, "ଯଦି ଭଗବାନଙ୍କର ଇଚ୍ଛା ଯେ ଗଛର ଅଧା ଫଳ ନିଶୀଥ ପାଇବ, ତେବେ ସେ କୌଣସି ନା କୌଣସି ଭାବରେ ଇଙ୍ଗିତ ଦେବେ । ମୁଁ ଗଛ ଚଢ଼ି ଦୁଇ ତିନୋଟି ଫଳ ତୋଳି ଆଣେ । ତେଣିକି ଦେଖିବା ।"

ରାଜକୁମାର ଗଛ ଚଢ଼ି ଦୁଇ ତିନୋଟି ଫଳ ତୋଳି ପକେଟରେ ପୂରାଇ ତଳକୁ ଆସିଲା ଓ ଫଳଗୁଡ଼ିକ ବାହାର କରି ସମସ୍ତଙ୍କୁ ଦେଖାଇଲା । କିନ୍ତୁ ସେଥିରୁ କିଛି ଜଣା ପଡ଼ିଲା ନାହିଁ ।

"ହୁଏତ ଫଳ ଭିତରେ କିଛି ଇଙ୍ଗିତ ଥିବ ।" ଏହା କହି ରାଜକୁମାର କାଶୀନାଥ ହାତରେ ଗୋଟିଏ ଫଳ ଓ ଛୁରୀଟିଏ ଦେଇ କହିଲା, "ଏହାର ଚୋପା ଛଡ଼ାଇ ଦେଖିଲ ! ହୁଏତ କିଛି ଇଙ୍ଗିତ ମିଳିପାରେ ।"

କାଶୀନାଥ ଚୋପା ଛଡ଼ାଇ ଦେଖିଲା ବେଳକୁ ଫଳଟି ଦୁଇଭାଗ ହୋଇ ରହିଛି ।

ସମସ୍ତେ ସମସ୍ୱରରେ କହିଲେ, "କି ଆଶ୍ଚର୍ଯ୍ୟ!



ଭଗବାନଙ୍କ ଇଚ୍ଛା ଗଛର ଫଳ ଦୁଇଭାଗ ହେବ !"

କାଶୀନାଥ ହଠାତ୍ କହିଲା, ଦୁଇ ଭାଗ ହେବା ଦରକାର ନାହିଁ । ମୁଁ ପୁରା ଫଳ ଗଛଟି ନଶୀଥକୁ ସମର୍ପଣ କଲି । ବଡ଼ଭାଇ ଭାବରେ ମୋର ତା' ପ୍ରତି ଯାହା କର୍ତ୍ତବ୍ୟ ମୁଁ କରିନାହିଁ । ଏଣିକି ଭଗବାନ ମୋତେ ସଦ୍‌ବୁଦ୍ଧି ଦିଅନ୍ତୁ ।"

ଲୋକେ କାଶୀନାଥକୁ ସାବାସ୍ ଦେଲେ । ଅଳ୍ପ ଦିନ ଭିତରେ ସେଓ ବିକି ନଶୀଥ ସାଇକେଲ୍ କିଣିଲା । ଅବଶ୍ୟ କାଶୀନାଥ ଆପତ୍ତି କଲେ ବି ନଶୀଥ ପ୍ରଚୁର ଫଳ କାଶୀନାଥ ଘରକୁ ପଠାଏ ।

ଦିନେ ରାଜକୁମାରକୁ ସାଇକେଲ୍‌ରେ ବସାଇ କଲେଜ ଗଲା ବେଳେ ନଶୀଥ ପଚାରିଲା, "ଆଚ୍ଛା କହିଲୁ, ସେଓ ଭିତର ଭାଗ ଦୁଇ ଭାଗ ହେଲା କିପରି ?"

"ଆରେ ଭାଇ, ସେତିକି ମୋ ସାଙ୍ଗ ନବକିଶୋର କୃତିତ୍ୱ ।" ରାଜକୁମାର କହିଲା ।

"କ'ଣ, ବୁଝିଲି ନାହିଁ ।" ନଶୀଥ କହିଲା ।

"ମୁଁ ତା' ପରାମର୍ଶ ଅନୁସାରେ ରାତିରେ ସେ ଗଛରୁ ଗୋଟାଏ ସେଓ ଆଣିଥିଲି । ଛୁଞ୍ଚିରେ ସୂତା ଚଢ଼ାଇ ସେ ଫଳର ଚୋପା ତଳେ ତଳେ ସୂତାଟି ଯେଉଁଠି ପ୍ରଥମେ ଭର୍ତ୍ତି କରିଥିଲି, ବିପରୀତ ଦିଗରୁ ସେହି ବିନ୍ଦୁ ଯାଏ ନେଇ ଆସିଲି । (ଚିତ୍ର ଦେଖନ୍ତୁ ।) ତା'ପରେ ସୂତାର ଦୁଇ ପ୍ରାନ୍ତକୁ ଧରି ଏକ ସମୟରେ ଟାଣିବାରୁ ସୂତା ଫଳଟିକୁ ଦୁଇ ଖଣ୍ଡ କରି ବାହାରି ଆସିଲା । ଫଳର ଉପରି ଭାଗକୁ ଟିକିଏ ପୋଛି ଦେବାରୁ ତହିଁରୁ ଛୁଞ୍ଚିର ଦାଗ ଚାଲିଗଲା । ସେହି ସେଓଟିକୁ ମୁଁ ପକେଟରେ ରଖିଥିଲି । ଗଛରୁ ତୋଳିବା ସେଓ ବଦଳରେ ସେହି ଗୋଟିକ ବାହାର କରି କାଶୀନାଥଙ୍କୁ ଦେଇଥିଲି । ଏହି ହେଲା ରହସ୍ୟ ।" ରାଜକୁମାର ବୁଝାଇ ଦେଲା ।





# ବୁଢ଼ୀର ଚାତୁରୀ

ଆନନ୍ଦ ଗୋଟିଏ ଦୋକାନରେ ଚାକିରି କରୁଥାଏ । ସେ ନୂଆ କରି ବାହା ହୋଇଥାଏ । ବୋହୂର ନାମ କମଳା ।

ବିବାହ ଉତ୍ସବ ସରିବା ଉତ୍ତାରୁ ଆନନ୍ଦ ପୁଣି କାମରେ ଯୋଗ ଦେବାକୁ ଯିବା ଦିନ କମଳାକୁ କହିଗଲା, "ଏ ଗାଁରେ ଗୋଟିଏ କାଣୀ ବୁଢ଼ୀ ଅଛି । ସେ ଭାରି ମିଠା ମିଠା କଥା କହେ । କିନ୍ତୁ ତାକୁ ଦୂରରୁ ଜୁହାର କରୁଥିବ; ଘରେ ପୂରାଇବ ନାହିଁ ।"

ସେଦିନ ଘରର କାମଦାମ ଶେଷ କରି କମଳା ଝରକା ପାଖକୁ ଆସି ରାସ୍ତାକୁ ଅନାଇ ଦେଖିଲା, କାଣୀ ବୁଢ଼ୀଟିଏ ତା' ଘର ଆଗରେ ବୁଲାବୁଲି କରୁଛି । କମଳା ଝରକା ବନ୍ଦ କରିଦେଲା ।

ଆନନ୍ଦ ରାତି ହେବା ବେଳକୁ ଯାଇ ଫେରିଲା । କମଳା ପାଖରୁ ସବୁ ଶୁଣି ଖୁସି ହୋଇ କହିଲା, "ଭଲ କରିଛ, ବୁଢ଼ୀକୁ ଘର ଭିତରକୁ ସଙ୍ଗୋଳି ଆଣିନାହଁ । କଦାପି ତା' ସହ କଥାବାର୍ତ୍ତା କରିବ ନାହିଁ ।"

ପରଦିନ ବି କମଳା ବୁଢ଼ୀକୁ ତା' ଘର ଆଗରେ ବୁଲୁଥିବାର ଦେଖିଲା । ବୁଢ଼ୀ ଯେ ତା' ଦୃଷ୍ଟି ଆକର୍ଷଣ କରିବାକୁ ଚେଷ୍ଟା କରୁଥାଏ, ସେଥିରେ ସନ୍ଦେହ ନ ଥିଲା । କିନ୍ତୁ କମଳା ତାକୁ ଦେଖି ମଧ୍ୟ ନ ଦେଖିଲା ପରି ରହିଯାଏ ।

ଦୁଇ ତିନିଦିନ ଗଲା । ହଠାତ୍ ଦିନେ କମଳା ମନରେ ସନ୍ଦେହ ହେଲା—କାହିଁକି ତା' ସ୍ୱାମୀ ବୁଢ଼ୀ ପ୍ରତି ଏତେ ବିରକ୍ତ ? ଏଥିରେ ନିଶ୍ଚୟ କିଛି ରହସ୍ୟ ରହିଛି । ଥରେ ଏକଥା ମନକୁ ଆସିବା ପରେ ଆଉ କମଳା ଶାନ୍ତି ପାଇଲା ନାହିଁ । ସେ କବାଟ ଖୋଲି ବୁଢ଼ୀକୁ ଭିତରକୁ



ସହ କଥାବାର୍ତ୍ତା କରିବାକୁ ବାରଣ କରିଥିଲି ।

ସନ୍ଧ୍ୟା ହେବାରୁ କମଳା ନିଜ ଘର ବନ୍ଦ କରି ଧୀରେ ଧୀରେ ଗାଁ ମୁଣ୍ଡରେ ଥିବା ଜୁଆ ଆଡ୍ଡା ଅଭିମୁଖେ ଚାଲିଲା । ଝରକା ଦେଇ ଉଙ୍କି ମାରି ଦେଖିଲା, ଯେଉଁମାନେ ଜୁଆ ଖେଳୁ-ଛନ୍ତି ତାଙ୍କ ଭିତରେ ଆନନ୍ଦ ନାହିଁ । ଫେରିବା ବାଟରେ ସେ ଆନନ୍ଦର ଦୋକାନ ପାଖ ଦେଇ ଆସିଲା । ଦୂରରୁ ଦେଖିଲା, ଆନନ୍ଦ ସେ ପର୍ଯ୍ୟନ୍ତ ଦୋକାନ ଭିତରେ ହିସାବ ନିକାଶରେ ବ୍ୟସ୍ତ ।

"ବୁଢ଼ୀଟି କମ ଧୂର୍ତ୍ତ ନୁହେଁ । ଘର ଭାଙ୍ଗିବାହିଁ ତା'ର ଉଦ୍ଦେଶ୍ୟ ଦେଖୁଛି !" ଏହା ଭାବି କମଳା ଘରକୁ ଫେରି ଦେଖେ ତ ଘର ପଛ ଅଗଣାରେ ଥିବା ବାଲଟି ଓ ଆଉ କେତେକ ଜିନିଷ ଉଭେଇ ଯାଇଛି ।

ଟିକିଏ ପରେ ଆନନ୍ଦ ଘରକୁ ଫେରିବା ମାତ୍ରେ କମଳା ତାକୁ "ମୋର ସନ୍ଦେହର ଫଳ ମୋତେ ମିଳିଛି " ବୋଲି କହି ସବୁ କଥା ଜଣାଇଲା ।

"ବୁଢ଼ୀ ହିଁ ଏ ଚୋରି ପାଇଁ ଦାୟୀ । ତା' ପାଖରେ ତା'ର ଜଣେ ନାତି ଥାଏ । ସେହି ପାଚେରୀ ଡେଇଁ ଚୋରି କରେ । ବୁଢ଼ୀ ବୁଦ୍ଧି ଦିଏ । କେହି ସେମାନଙ୍କୁ ଧରି ପାରନ୍ତି ନାହିଁ ।" ଆନନ୍ଦ କହିଲା ।

କମଳା ବୁଢ଼ୀ ଦ୍ୱାରା ଏପରି ପ୍ରତାରିତ ହୋଇ ଚୁପ୍‌ଚାପ୍ ରହିଯିବା ଝିଅ ନୁହେଁ । ସେ ଅନେକ ସମୟ ଚିନ୍ତା କରି ଗୋଟିଏ ଯୋଜନା ବନାଇଲା ଓ ଆନନ୍ଦକୁ କହିଲା । ଆନନ୍ଦ ମନକୁ ଯୋଜନାଟି ପାଇଲା ।

ଡାକି ଆଣିଲା ଓ ମନ ଖୋଲି ଗପସପ କଲା ।

ବୁଢ଼ୀ କଥାରେ ଗୋଟା ପ୍ରକାର ଆକର୍ଷଣ ଥିଲା । ସେ ଶୀଘ୍ର ଅନ୍ୟ ମନରେ ବିଶ୍ୱାସ ଉପୁ-ଜାଇ ପାରୁଥାଏ । କିଛି ସମୟ ପରେ ସେ କମଳାକୁ କହିଲା, "ଝିଅ ! ତୋ ପ୍ରତି ମୋର ଯେତିକି ସ୍ନେହ ହେଉଛି, ତୋ କପାଳ କଥା ଭାବି ସେତିକି ଦୁଃଖ ହେଉଛି । କାହାକୁ କହିବୁ ନାହିଁ, କିନ୍ତୁ ତୋ ସ୍ୱାମୀ ଜୁଆଡ଼ି । ସନ୍ଧ୍ୟା ହେଲେ ଗାଁ ମୁଣ୍ଡ ଜୁଆ ଆଡ୍ଡାରେ ଯାଇ ପହଞ୍ଚି ଯାଏ । ମୋ କଥା ବିଶ୍ୱାସ ନ ହେଲେ ସନ୍ଧ୍ୟାବେଳେ ତୁ ନିଜେ ଯାଇ ଦେଖ ।"

ବୁଢ଼ୀ ଚାଲିଗଲା । କମଳା ମନରେ ଆଉ ସୁଖ ରହିଲା ନାହିଁ । ସେ ଧରିନେଲା, ନିଜ ଦୁର୍ଗୁଣ ଜଣା ପଡ଼ିଯିବ ବୋଲି ଆନନ୍ଦ ତାକୁ ସେ ବୁଢ଼ୀ

ରାତି ପହରରେ ସଜିକ ହେବ । ଗୋଟାଏ ବୁଜୁଳା ଧରି କମଳା ବୁଢ଼ୀ ଘରେ ହାଜର ହେଲା । ତାକୁ ଦେଖି ବୁଢ଼ୀ ମୁହଁ ଶୋଚା ପଡ଼ିଗଲା । କିନ୍ତୁ କମଳା କାନ୍ଦିବାର ଅଭିନୟ କରି କହିଲା, "ବୁଢ଼ୀମା ! ତୁମେ ଆଜି ମୋର ବହୁତ ଉପକାର କରିଛ । ତୁମ କଥା ମାନି ମୁଁ ଜୁଆ ଆଡ୍ଡାକୁ ନ ଯାଏ କି ମୋ ସ୍ୱାମୀର ଅସଲ ରୂପ ନ ଦେଖେ ।"

ବୁଢ଼ୀ ଖୁସି ହେଲା । ସେ ମିଛରେ ଯାହା କହିଥିଲା, ତାହା ପ୍ରକୃତରେ ସତ ହୋଇଥିବାର ସେ ବୁଝିଲା ।

"ବୁଢ଼ୀମା ! ମୋ ସ୍ୱାମୀ ଖାଲି କ'ଣ ଜୁଆଡ଼ି ? ସେ ମଦ୍ୟପ ମଧ୍ୟ । ସବୁଦିନ ରାତି ଅଧ ବେଳକୁ ଘରକୁ ଫେରି ଆସନ୍ତି । ମୁଁ ଏ ଅବସ୍ଥା ଭିତରେ ଆଉ ତାଙ୍କ ଘରେ ରହିବାକୁ ପ୍ରସ୍ତୁତ ନୁହେଁ । ଭୋର ହେଲେ ମୋ ବାପ ଘରକୁ ଚାଲିଯିବି । ତୁମଛଡ଼ା ମୋର ବା ଚିହ୍ନା ଆଉ କିଏ ଅଛି ? ତେଣୁ ତୁମରି ଘରେ ରାତିକ କଟାଇ ଦେବି । ନିଅ ଆମ ଘରର ଚାବି । ତୁମେ ଯାଇ ଆମ ବସାରେ ଅପେକ୍ଷା କର । ମୋ ସ୍ୱାମୀ ଫେରିଲେ କହିଦେବ କି ମୁଁ ବାପଘରକୁ ଚାଲିଯାଇଛି । ଚାବିଟି ତୁମ ଜିମା ଦେଇ ଯାଇଛି ।" କମଳା କହିଲା ।

ବୁଢ଼ୀ ଚାବି ଗ୍ରହଣ କରି କହିଲା, "ହଉ, ଝିଅ । ତୋର ଏତିକ କଥା କ'ଣ ମୁଁ ଆଉ ରଖନ୍ତି ନାହିଁ ? ତୁ ବିଶ୍ରାମ କର ।"

"ଜେଜେମା ! ମଦ ପିଇ ଫେରିଥିବା ମୋ ସ୍ୱାମୀ କାଳେ ତୁମକୁ ବାଡ଼େଇବେ, ସେ ପାଇଁ ତୁମ ନାତିଟିକୁ ସାଥିରେ ନେଇ ଯାଇଥାଅ ।" କମଳା ପ୍ରସ୍ତାବ ଦେଲା ।



ବୁଢ଼ୀ ବି ସେଇଆ ବୁଝିଥିଲା । ସେ ଆନନ୍ଦରେ ନାତିକୁ ଧରି ଆନନ୍ଦ ଘର ଆଡ଼କୁ ଚାଲିଲା । ଆନନ୍ଦ ତ ରାତି ଅଧଯାଏ ଫେରିବ ନାହିଁ । ତେଣୁ ସେ ମନଇଚ୍ଛା ତା' ଘର ଲୁଟି ଆଣିବ । ଏଣେ ଭୋର ବେଳକୁ କମଳା ଚାଲି-ଯିବ । ଆନନ୍ଦ ଜାଣି ବି ପାରିବ ନାହିଁ ତା' ଘର କିଏ ଲୁଟିନେଲା ।

ଆନନ୍ଦର ଘର ଭିତରଯାକ ତଲାସ କରି ଯେତେ ମୂଲ୍ୟବାନ ସାମଗ୍ରୀ ମିଳିଲା ବୁଢ଼ୀ ଓ ନାତି ସବୁ ଜମା କରି ଗଣ୍ଠିଲି ବାନ୍ଧିଲେ । ଅଧ ରାତି ହେବାକୁ ଆଉ ବିଳମ୍ବ ନ ଥାଏ । ଦୁହେଁ ଘର ପଛପଟେ ଦେଇ ବାହାରି ଯିବାକୁ ଠିକ୍ ଯେମିତି ପଛ କବାଟ ଖୋଲିଛନ୍ତି, ସେମିତି ଦେଖିଲେ, ସେ ପଟେ କେତେଜଣ ବଳୁଆ ଲୋକ ଲାଠି ଧରି ଠିଆ ହୋଇଛନ୍ତି ।

ବୁଢ଼ୀ ଓ ନାତି ଚଟ୍‌କିନା ଘର ଭିତରକୁ ଫେରି ଆସିଲେ । ସେ ଲୋକେ କାହିଁକି ସେଠାରେ ଜମା ହୋଇଛନ୍ତି ସେ କଥା ସେମାନେ ବୁଝି ପାରିଲେ ନାହିଁ । ବାହାରପଟେ ଦେଇ ପଳାଇବାକୁ ସ୍ଥିର କରି ସେମାନେ ଦୁଆର ଖୋଲିଲେ । ଦେଖିବା ବେଳକୁ ଖୋଦ୍ ଆନନ୍ଦ ଆଠ ଦଶ ଜଣ ଲୋକଙ୍କୁ ଧରି ସେଠାରେ ଉପସ୍ଥିତ !

"ଗଣ୍ଠିଲି ତଳେ ରଖ !" ଆନନ୍ଦ ହୁକୁମ ଦେଲା । ସଙ୍ଗେ ସଙ୍ଗେ ଗ୍ରାମବାସୀମାନେ ବୁଢ଼ୀର ନାତିକୁ ଅକ୍ତିଆର କରିନେଲେ । ବୁଢ଼ୀର ଅବଶ୍ୟ ପଳାଇଗଲା ଭଳି ତାକତ ନ ଥିଲା ।

ସେ ଦୁହିଁଙ୍କୁ ଧରି ଗ୍ରାମବାସୀମାନେ ବୁଢ଼ୀ ଘରେ ପହଞ୍ଚିବା ବେଳକୁ କମଳା ସେ ଘରଯାକ ତଲାସ କରି ତା' ନିଜ ବାଲିଶି ଓ ଅନ୍ୟାନ୍ୟ ସରଞ୍ଜାମ ସାଙ୍ଗକୁ ଅନ୍ୟାନ୍ୟ ବହୁତ ଚୋରି ମାଲ ଉଦ୍ଧାର କରି ସାରିଥାଏ । ଗ୍ରାମବାସୀମାନେ ଯେଝା ଜିନିଷ ଚିହ୍ନି ନେଇଗଲେ । ବୁଢ଼ୀର ବୟସ ଦୃଷ୍ଟିରୁ ଗ୍ରାମବାସୀମାନେ ତା' ପ୍ରତି କୌଣସି ଶାସ୍ତିବିଧାନ କଲେ ନାହିଁ, କିନ୍ତୁ ତା' ନାତିକୁ ପୋଲିସ୍ ହାତରେ ସମର୍ପି ଦେଲେ ।

କମଳାର ବିବେକ ବୁଦ୍ଧିକୁ ଗ୍ରାମବାସୀମାନେ ବହୁତ ପ୍ରଶଂସା କଲେ ।



# ବର ପରୀକ୍ଷା

ଅବନ୍ତୀର ରାଜକୁମାରୀ ଥିଲେ ଅପୂର୍ବ ସୁନ୍ଦରୀ । ତାଙ୍କ ପାଇଁ ଲୋଡ଼ା ଥିଲା ଏପରି ଜଣେ ବର ଯାହାର ସାହସ ସଙ୍ଗେ ସଙ୍ଗେ ସାଧାରଣ ବୁଦ୍ଧି ଥିବ ।

ଆଖପାଖର ତିନିଜଣ ଯୋଗ୍ୟ ରାଜପୁତ୍ରଙ୍କୁ ନିମନ୍ତ୍ରଣ କରି ଅଣାଗଲା । ଅବନ୍ତୀ-ରାଜ ସେମାନଙ୍କୁ କୁକୁରଶାଳା ପାଖକୁ ନେଇ ଯାଇ କହିଲେ, "ଏଇ ଯେଉଁ କୁକୁରମାନଙ୍କୁ ଦେଖୁଛ, ଏମାନେ ସମସ୍ତେ ବର-ପରୀକ୍ଷାରେ ପରାଜିତ ହୋଇ ଏ ରୂପ ପାଇଛନ୍ତି । ତମକୁ ବଣ ଭିତରେ ଥିବା ଗୁଂଫା ଭିତରେ ପଶି ବାହାରି ଆସିବାକୁ ହେବ ।"

ଜଣେ ରାଜପୁତ୍ର ସଙ୍ଗେ ସଙ୍ଗେ ବାହୁଡ଼ି ଗଲେ । ଆଉ ଦୁଇଜଣ ଗୁଂଫା ମୁହଁପାଏ ଯାଇଛନ୍ତି, ଭିତରୁ କୁକୁର ଭୁକିବାର ଶୁଣି ଜଣେ ଫେରି ଗଲେ ।

ଶେଷ ଜଣକ ଗୁଂଫା ଭିତରେ ପଶିଲେ । ହଠାତ୍ ଗୁଂଫା ହେଲା ଆଲୋକିତ । ତହିଁ ଭିତରେ ଥିଲେ ରାଜକୁମାରୀ । ସେ ରାଜପୁତ୍ରଙ୍କୁ ପତିରୂପେ ବରଣ କଲେ ।





# କିଏ ଚୋର ?

ଜଣେ ଜମିଦାରଙ୍କ ପାଖରେ ଗିରିଧର ନାମରେ ଜଣେ ମାଳୀ ଓ ମାଣିକ ନାମରେ ଜଣେ ଚାକର ଥିଲେ । ଦୁହେଁ ପ୍ରାୟ ଏକସଙ୍ଗେ ଚାକିରି ପାଇଥିଲେ; ହେଲେ ଦୁହିଁଙ୍କର ଆଦୌ ପଟୁ ନ ଥିଲା ।

ଦିନେ ଜମିଦାର ମାଣିକକୁ ନେଇ ବଗିଚା ବୁଲିଗଲେ । ସେତେବେଳେ ଗିରିଧର ଗଛରେ ପାଣି ଦେଉଥିଲା । କିଛି ସମୟ ପରେ ଜମିଦାର ଚାଲିଗଲେ । ହଠାତ୍ ମାଳୀ ଦୂରରୁ ଦେଖିଲା ଯେ କିଛି ଗୋଟାଏ ଜିନିଷ ଚକ୍‌ଚକ୍ କରୁଛି । ପାଖରେ ଯାଇ ଦେଖିଲା ଗୋଟିଏ ସୁନ୍ଦର ହୀରାମୁଦି ।

ଗିରିଧର ଭାବିଲା, "ଭୁଲରେ ହୁଏତ ମୁଦିଟି ଖସିପଡ଼ିଛି । ଭାଗ୍ୟକୁ ମୁଁ ଦେଖିଲି । ମାଣିକ ପାଇ ଥିଲେ କ'ଣ ନାହିଁ କ'ଣ କରନ୍ତା ।"

ଏପରି ଭାବୁ ଭାବୁ ତା' ମନକୁ ଗୋଟାଏ କଥା ଜୁଟିଲା, ସେ ଚାରିଆଡ଼କୁ ଚାହିଁ ମୁଦିଟି ଧୋତି କାନିରେ ବାନ୍ଧି ଦେଲା ।

ସେଇ ଦିନ ରାତିରେ ସେ ମାଣିକ ଘର ଆଡ଼କୁ ଚାଲିଲା । ଦେଖିଲା କବାଟ ଖୋଲା ଅଛି । ଗିରିଧର ଭିତରକୁ ଚାହିଁଲା । ଦେଖିଲା ମାଣିକ ସେପର୍ଯ୍ୟନ୍ତ ନ ଶୋଇ ତା' ବାକ୍‌ସ ଭିତରେ କ'ଣ ଖୋଜୁଛି । ଶେଷକୁ ସେ କିଛି ଗୋଟାଏ ବାକ୍‌ସରୁ କାଢ଼ିଲା ଓ ମୁଠେଇ ଧରି କବାଟ ଆଡ଼କୁ ଆସିଲା ।

ଗିରିଧର କବାଟ ଆଢ଼ୁଆଳରେ ଛପିଗଲା । ମାଣିକ ବାହାରକୁ ଯିବା ପରେ ସେ ବିଲେଇଟି ପରି ଚୁପ୍ ଚାପ୍ ଘରେ ପଶିଗଲା ଓ ମୁଦିଟି ତା' ବାକ୍‌ସରେ ରଖି ବାହାରି ଆସିଲା ।

ପୁଣି ଭାବିଲା, ଏତେ ରାତିରେ ବା ମାଣିକ

କାଶୀନାଥ

କୁଆଡ଼େ ଗଲା ? ହାତରେ ତା'ର କ'ଣ ବା ଥିଲା ? ଭାବୁ ଭାବୁ ସେ ମାଣିକ ଯିବା ବାଗରେ ଚାଲିଲା । ମାଣିକ ବଗିଚାକୁ ଯାଇ ପୋଖରୀ କୂଳରେ ଥିବା ଗଛ ଖୋଲରେ କିଛି ଲୁଚାଇ ରଖିଲା । ସବୁଦିନେ ଗିରିଧର ଗାଧୋଇ ଯିବା ବେଳେ ସେହି ଗଛ ଖୋଲରେ ଲୁଗା ରଖେ । ତେଣୁ ଜିନିଷଟି ଦେଖିବାକୁ ତା' ମନରେ ସ୍ୱତଃ କୌତୁହଳ ଜାତ ହେଲା । ମାଣିକ ଚାଲିଯିବା ପରେ ସେ ଗଛ ଆଡ଼େ ଚାଲିଲା । ଠିକ୍ ସେତିକବେଳେ ତା' ମୁଣ୍ଡ ଉପରେ ଖୁବ୍ ଜୋର୍‌ରେ କିଏ ଆଘାତ କଲା ଓ ସେ ବେହୋସ୍ ହୋଇଗଲା ।



ଚେତା ଫେରିବାରୁ ଦେଖିଲା ଯେ ସେ ନିଜ ଘରେ ଶୋଇଛି । ସେ ଭାବିଲା ସେ ଆସୁଥିବାର ଜାଣି ମାଣିକ ପଛପଟୁ ଆସି ଏପରି ମାରିଛି । ତେଣୁ ସକାଳେ ଯାଇ ଏହାର ପ୍ରତିଶୋଧ ନେବାକୁ ହେବ ।

ପରଦିନ ସକାଳେ ନିଜେ ଜମିଦାର ଦୁଇ ଜଣଙ୍କୁ ଡାକି ଧମକାଇଲେ, "ମୋ ହାତରେ ବନ୍ଧା ହୋଇଥିବା ସୁନାଚେନ୍ କେହି ନେଇ ଯାଇଛି । ତାକୁ ଚୋରି କରିବାର ସୁବିଧା କେବଳ ତୁମ ଦୁହିଁଙ୍କର ଅଛି । ତେଣୁ ଦୁହେଁ ସତ କୁହ ନହେଲେ ବହୁତ ଦଣ୍ଡ ପାଇବ ।" ଏକଥା ଶୁଣି ଗିରିଧର ଚମକି ପଡ଼ିଲା ।

ନିଜର ମୁଦି ହଜିବା ସତ୍ତ୍ୱେ ଜମିଦାର କ'ଣ ସୁନାଚେନ୍ ହଜିବା କଥା କହୁଛନ୍ତି, ଏ ପୁଣି କି କଥା ? କିନ୍ତୁ ମାଣିକ ନିଃସନ୍ଦେହ ଭାବରେ କହିଲା, "ହଜୁର, ଏସବୁ ଗିରିଧରର କାମ, ରାତିରେ ବଗିଚାରେ ସେ କିଛି ଜିନିଷ ଲୁଚାଇ ରଖିଥିଲା ମୁଁ ନିଜ ଆଖିରେ ଦେଖିଛି । ଚାଲନ୍ତୁ ଦେଖାଇ ଦେବି ।" ଏକଥା କହି ସେ ଜମିଦାରଙ୍କୁ ସାଙ୍ଗରେ ନେଇ ଗଛ ନିକଟକୁ ଚାଲିଗଲା । ଗଛ ଖୋଲରେ ହାତ ପୂରାଇ ଏପଟ ସେପଟ ଦେଖି ମନେ ମନେ କହିଲା, "ଆରେ, ମୁଁ ତ ଏଇଠି ଲୁଚାଇ ରଖିଥିଲି, କ'ଣ ହେଲା ?"

ମାଣିକର କୌଶଳ ଗିରିଧର ବୁଝିପାରିଲା । ଗିରିଧରକୁ ଚୋର ପ୍ରମାଣିତ କରିବା ପାଇଁ ମାଣିକ ସେଠି ସୁନାଚେନ୍ ରଖିଥିଲା । କିନ୍ତୁ ଅନ୍ୟ କେହି ଗିରିଧରକୁ ପିଠି ସେଇଟି ନେଇ ଯାଇଛି ।

ଗିରିଧର ମନେ ମନେ ମାଣିକ ଉପରେ ବହୁତ ରାଗିଲା । ସେ ଜମିଦାରଙ୍କୁ କହିଲା, "ମୁଁ ଜାଣେ ସୁନାଚେନ୍ କିଏ ଚୋରି କରିଛି । କିନ୍ତୁ ଆପଣ ମୁଦି କଥାଟି ବୋଧେ ପୁରା ଭୁଲିଗଲେ ! ଦୁଇଟିଯାକ ଜିନିଷ ମାଣିକହିଁ ଚୋରି କରିଛି । ମୋ ସହିତ ଆସନ୍ତୁ ।" ଏକଥା କହି ସେ ଜମିଦାରଙ୍କୁ ମାଣିକ ଘରକୁ ନେଇ ବାକ୍ସ ଖୋଲି ଦେଖାଇଲା, କିନ୍ତୁ ସେଥିରେ ମୁଦି ନ ଥିଲା । ବ୍ୟସ୍ତ ହୋଇ ମନେ ମନେ କହିଲା, "ମୁଁ ତ ଏଥିରେ ରଖିଥିଲି, କୁଆଡ଼େ ଗଲା ?"

ଏସବୁ ଦେଖି ଜମିଦାର ହସି ହସି ଏକ ରୁମାଲ୍ ଭିତରୁ ଦୁଇଟି ଯାକ ଜିନିଷ ଧିରେ

କଲ ! ତୁମ ଭିତରେ ଭଲ ସ୍ୱଭାବ ଥିଲେ ମଧ୍ୟ ପରସ୍ପର ମଧ୍ୟରେ ସହଯୋଗିତା ନାହିଁ । ତୁମମାନଙ୍କ ପାଇଁ ମୋତେ ମଧ୍ୟ ଅନେକ କ୍ଷତି ସହିବାକୁ ପଡ଼ୁଛି । ତେଣୁ ବର୍ତ୍ତମାନ ତୁମେ ଦୁହେଁ ଘରକୁ ଯାଇପାର । ଆଉ କାମର ଦରକାର ନାହିଁ ।"

ଜମିଦାରଙ୍କ କଥା ଶୁଣି ଦୁହେଁ ଲଜ୍ଜାରେ ମୁଣ୍ଡ ତଳକୁ କଲେ ଓ ଯଥାଶୀଘ୍ର ପ୍ରସ୍ଥାନ କଲେ ।

ଧିରେ ବାହାର କରି ସେମାନଙ୍କୁ ଦେଖାଇଲେ ।

ଦୁହିଁଙ୍କ ମୁହଁ କଳା ପଡ଼ିଗଲା । ଜମିଦାର କହିଲେ, "ତୁମ ଦୁହିଁଙ୍କୁ ପରୀକ୍ଷା କରିବାକୁ ମୁଁ ଏହି ନାଟକ ରଚନା କରିଥିଲି । ମୁଁ ଜାଣି ଜାଣି ଏପରି ସ୍ଥାନରେ ପକାଇଥିଲି ଯେପରି ତମେ ପାଇବ, ଆଉ ପାଇ ମୋତେ ଫେରାଉଛ ନା ନାହିଁ ଦେଖୁଥିଲି । ତୁମେ ନିଜେ ତ ଚୋରି କଲ ନାହିଁ, କିନ୍ତୁ ଅନ୍ୟକୁ ଚୋର ପ୍ରମାଣିତ କରିବା ପାଇଁ ଏତେ ଗୁଡ଼ାଏ ଦୁଷ୍ଟ ବୁଦ୍ଧି ବାହାର





# ଗୁଣ୍ଡୁଚିର ଦାଗ

ବିଦ୍ୟାନାଥ ନାମକ ଜଣେ ମହାନ୍ ପଣ୍ଡିତ ଗୋଟିଏ ଗୁରୁକୁଳ ଆଶ୍ରମ କରି ସେଠାରେ ବିଦ୍ୟାର୍ଥୀମାନଙ୍କୁ ଶିକ୍ଷାଦାନ ଦେଉଥିଲେ । ତାଙ୍କ ଆଶ୍ରମର ଖ୍ୟାତି ଚାରିଆଡ଼କୁ ବ୍ୟାପି ଯାଇଥିଲା ।

ବିଦ୍ୟାନାଥଙ୍କ ପୁତ୍ର ବୃହସ୍ପତି ମଧ୍ୟ ପିତାଙ୍କ ଭଳି ଜଣେ ପଣ୍ଡିତ ହେଲେ । ବିଦ୍ୟାନାଥ ପୁତ୍ର ଉପରେ ନିଜ ପ୍ରତିଷ୍ଠାନର ଦାୟିତ୍ୱ ସମର୍ପଣ କରିବାକୁ ସ୍ଥିର କଲେ ଏବଂ ବୃହସ୍ପତିଙ୍କୁ କହିଲେ, "ପୁଅ ! ତୁ ବିଦ୍ୟାରେ ଖୁବ୍ ପାରଙ୍ଗମ ଠିକ୍, କିନ୍ତୁ ଦୁନିଆର ହାଲଚାଲ ସମ୍ପର୍କରେ ତୋର କିଛି ବାସ୍ତବ ଅଭିଜ୍ଞତା ହେବା ଆବଶ୍ୟକ । ସମାଜର ଗତି ମତି, ମଣିଷଙ୍କ ଆଚାର ବ୍ୟବହାର ସମ୍ପର୍କରେ କିଛି ଧାରଣା ବିନା ଗୋଟିଏ ପ୍ରତିଷ୍ଠାନ ପରିଚାଳନା କରିବା ସହଜ ନୁହେଁ । ତେଣୁ ତୁ ଥରେ ଦେଶ ପର୍ଯ୍ୟଟନ କରି ଆ ।"

ବୃହସ୍ପତି ଅବିଳମ୍ବେ ପର୍ଯ୍ୟଟନରେ ବାହାରି ଗଲେ । ପ୍ରକୃତରେ, ପୋଥିପତ୍ରରୁ ତାଙ୍କୁ ଯେଉଁ ଜ୍ଞାନ ମିଳି ନ ଥିଲା, ଭ୍ରମଣ କରି, ଲୋକଙ୍କ କାମଦାମ କଥାବାର୍ତ୍ତା ଲକ୍ଷ୍ୟ କରି ସେ ସେଭଳି ବିଚିତ୍ର ଜ୍ଞାନ ଅର୍ଜନ କରିବାକୁ ଲାଗିଲେ ।

ଗୋଟିଏ ଗାଁରେ ସେ ଦେଖିଲେ, ଜଣେ ପ୍ରଚଣ୍ଡକାୟ ମଲ୍ଲଯୋଦ୍ଧା ଜଣେ ଦୁର୍ବଳ ଲୋକର ପାଦ ପୂଜା କରି ବାରମ୍ବାର କହୁଛି, "ଜୟ, ମହାବଳୀଙ୍କର ଜୟ !" ବୃହସ୍ପତି ଆଶ୍ଚର୍ଯ୍ୟ ହୋଇ ଅନୁସନ୍ଧାନ କରି ଏହାର ରହସ୍ୟ ଜାଣିଲେ :

ଏକଦା ସେ ଗାଁରେ ମହାବଳୀ ନାମରେ ଜଣେ ଲୋକ ଥିଲା । ସେ ଗ୍ରାମବାସୀମାନଙ୍କୁ ବିଭିନ୍ନ ବିପଦରୁ ରକ୍ଷା କରିଥିଲା । ବଣ ଭିତରୁ

କିନ୍ତୁ ଜାନୁଆର ଗାଁ ଭିତରକୁ ପଶିଆସିଲେ ସେ ଏକୁଟିଆ ସେମାନଙ୍କୁ ମାରିପକାଉଥିଲା । ଥରେ ଦୁର୍ମୁଖ ନାମକ ଦୈତ୍ୟ ସେ ଅଞ୍ଚଳରେ ନାନା ଉପଦ୍ରବ ଆରମ୍ଭ କଲା । ମହାବଳୀ ମହାକାଳୀଙ୍କର ଆରାଧନା କରି ଦୁର୍ମୁଖ ସହ ଲଢ଼ି ତାକୁ ବଧ କଲା । ଫଳରେ ମହାବଳୀ ପ୍ରତି ଗ୍ରାମବାସୀଙ୍କ ଶ୍ରଦ୍ଧା ଭକ୍ତିର ଅନ୍ତ ନ ଥାଏ । ବିଶେଷତଃ ବଳବାନ୍ ବ୍ୟକ୍ତିମାନଙ୍କର ସେ ହେଲା ଆରାଧ୍ୟ । ଯେଉଁଦିନ ଦୁର୍ମୁଖ ମରିଥିଲା, ସେହି ଦିନକୁ ପର୍ବଦିନ ରୂପେ ପାଳନ କରାହେଲା ଓ ମହାବଳୀର ପୂଜା ହେଲା । ମହାବଳୀର ମୃତ୍ୟୁ ପରେ ତା' ବଂଶଧରକୁ ପୂଜା କରାଗଲା । ଏହିପରି ଭାବରେ ଶହ ଶହ ବର୍ଷ ଧରି ପରମ୍ପରା ଗଢ଼ି ଆସିଛି । ବଂଶଧରମାନେ ପୂଜା ପାଇ ଆସୁଛନ୍ତି ।

ପୂର୍ବପୁରୁଷଙ୍କ କୃତିତ୍ୱ ଯୋଗୁଁ ବଂଶଧରମାନେ ପୂଜା ପାଇବାର ଆହୁରି ଅନେକ ଦୃଷ୍ଟାନ୍ତ ବୃହସ୍ପତିଙ୍କ ଦୃଷ୍ଟିରେ ପଡ଼ିଲା । ତେବେ ଏହାର ବିପରୀତ ଘଟଣା ମଧ୍ୟ ସେ ଦେଖିଲେ :

କୌଣସି ଏକ ଗ୍ରାମରେ ସେ ସ୍ଥାନୀୟ ଜମିଦାରଙ୍କ ଘରେ ଅତିଥି ହୋଇଥାନ୍ତି । ସେଠାରେ ଥାଏ ଗୋଟିଏ ବଡ଼ ବିଦ୍ୟା ନିକେତନ । ସେଥିରେ ଅନେକ ପଣ୍ଡିତ ନିଯୁକ୍ତ ଥାନ୍ତି । ସେଦିନ ଜଣେ କବିଙ୍କୁ ନିଯୁକ୍ତି ଦେବା କଥା । ସେପାଇଁ ପାଞ୍ଚଜଣ ପ୍ରାର୍ଥୀ ଆସିଥାନ୍ତି । ଜମିଦାରଙ୍କ ଅନୁରୋଧ କ୍ରମେ ବୃହସ୍ପତି ସେ ନିର୍ବାଚନ ବେଳେ ଉପସ୍ଥିତ ରହିଲେ ।



ପ୍ରାର୍ଥୀଙ୍କ ଭିତରେ ଜଣେ ଥା'ନ୍ତି ଆଶୁ କବି । ସେ ସାଥିରେ ନିଜ ରଚିତ ତିନି ଖଣ୍ଡ କାବ୍ୟ ଧରି ଅସିଥାନ୍ତି । ତାଙ୍କୁ ଦେଖି ଜମିଦାର ହଠାତ୍ ପଚାରିଲେ, "ତମେ କ'ଣ ଅମ୍ବର ?" ପ୍ରାର୍ଥୀ ହଁ ଭରିବାରୁ ଜମିଦାର କହିଲେ, "ତେବେ ପ୍ରାର୍ଥୀ ହେବା ପାଇଁ ସର୍ବନିମ୍ନ ଯୋଗ୍ୟତା ରୂପେ ତମେ ପାଞ୍ଚଖଣ୍ଡ କାବ୍ୟ ଆଣିବା ଉଚିତ ଥିଲା । ଅନ୍ୟମାନଙ୍କ କଥା ଅଲଗା ।"

ଅନ୍ୟଜଣେ ପ୍ରାର୍ଥୀଙ୍କୁ ମନୋମିତ କରି ଜମିଦାର ସଭା ଭଙ୍ଗ କରନ୍ତେ ବୃହସ୍ପତି ତାଙ୍କୁ ପଚାରିଲେ, "ଆଜ୍ଞା ! ସେ ଲୋକର ନାମ କ'ଣ ଅମ୍ବର ? ତେବେ ତା'ର ଦୋଷ କ'ଣ ?"

ଜମିଦାର ବୁଝାଇଲେ, "ଅମ୍ବର କୌଣସି ଜଣକର ନାମ ନୁହେଁ, ଏକ ଜାତିର ନାମ । ଏ ଜାତିର ଲୋକେ ବହୁକାଳ ପୂର୍ବେ ଘୋଷଣା କରିଥିଲେ ଯେ ସେମାନେ ଆକାଶରୁ ଖସି ଆସିଛନ୍ତି । ତେଣୁ ଅନ୍ୟ ମଣିଷଙ୍କଠାରୁ ସେମାନଙ୍କ ସ୍ଥାନ ଉଚ୍ଚରେ । ସେହି ଅନୁସାରେ ସେମାନଙ୍କର ପ୍ରତିପତ୍ତି ବଢ଼ିଗଲା । ସେମାନଙ୍କ କଥାରେ ରାଜା ମଧ୍ୟ ପ୍ରଭାବିତ ହେଲେ । ସମାଜର ସବୁ ସୁଖସୁବିଧା ଅମ୍ବରମାନେହିଁ ଏକଚାଟିଆ କରିନେଲେ ।

"ତା'ପରେ ସମସ୍ତ ରାଜ୍ୟରେ ଲୋକଙ୍କ ଧାରଣା ବଦଳିଗଲା । ଅମ୍ବରମାନେ ସେମାନଙ୍କ ଗୌରବଜନକ ସ୍ଥାନ ହରାଇଲେ । ଅମ୍ବରଜାତିରେ ଜନ୍ମ ହେତୁ ସେମାନେ କୌଣସି ବିଶେଷ ସୁବିଧା



ପାଇଲେ ନାହିଁ । ଆଜି ଆଉ ସେମାନଙ୍କର କୌଣସି ଗର୍ବ ନାହିଁ, କିନ୍ତୁ ସେମାନଙ୍କ ପୂର୍ବପୁରୁଷମାନେ କରିଥିବା ଅନ୍ୟାୟ ହେତୁ ସେମାନଙ୍କୁ ସବୁ କଥାରେ ହଇରାଣ ହେବାକୁ ହୁଏ ।" ଜମିଦାର ବୁଝାଇ ଦେଲେ ।

ବୃହସ୍ପତି ଆହୁରି ବର୍ଷଟିଏ ପର୍ଯ୍ୟଟନ କରି ଘରକୁ ଫେରିଲେ ଓ ଗୁରୁକୁଳର ଆଚାର୍ଯ୍ୟ ପଦ ଗ୍ରହଣ କଲେ ।

ଦିନେ ବୃହସ୍ପତି ନିଜ ଶିଷ୍ୟମାନଙ୍କୁ ପୁରୁଣା କାହାଣୀମାନ ଶୁଣାଇବା ବେଳେ ଗୁଣ୍ଡୁଚି ପିଠିରେ କାହିଁକି ଲମ୍ବ ଲମ୍ବ ଦାଗ ରହିଛି ତାହା ବୁଝାଉଥିଲେ । ରାମଚନ୍ଦ୍ର ସେତୁ ବନ୍ଧ ବାନ୍ଧିଲା ବେଳେ ଏହି ଛୋଟ ଜୀବ ଓଦା ହୋଇ ବାଲିରେ ଗଡ଼ି ଦେହର ବାଲି ନେଇ ବନ୍ଧ ଉପରେ ଝାଡ଼ି ଦେଇ ତାଙ୍କ ସହାୟତା କରୁଥିଲା ବୋଲି ରାମଚନ୍ଦ୍ର ଆନନ୍ଦିତ ହୋଇ ତା' ପିଠିରେ ହାତ ବୁଲାଇ ଦେଇଥିଲେ । ତାଙ୍କର ଅଙ୍ଗୁଳି ଦାଗ ଗୁଣ୍ଡୁଚି ପିଠିରେ ଅଦ୍ୟାବଧି ଦେଖିବାକୁ ମିଳେ ।

ଜଣେ ଶିଷ୍ୟ କହିଲା, "ଆଜ୍ଞା ! ଏହା କ'ଣ ସମ୍ଭବ ? ଜଣକ ଦାଗ କ'ଣ ତା' ବଂଶଧରମାନଙ୍କ ଦେହରେ ଦେଖା ଦେଇପାରେ ? ମୋ ବାପାଙ୍କ କପାଳରେ ଗୋଟାଏ ବଡ଼ ଦାଗ ଥିଲା । ସେ ପିଲା ବେଳେ ପଡ଼ିଯାଇ ଥିବାରୁ ସେ ଦାଗ ହୋଇ ଥିଲା । କିନ୍ତୁ ମୋ ଦେହରେ ତ ସେ ଦାଗ ନାହିଁ !"

ବୃହସ୍ପତି କହିଲେ, "ଠିକ୍ କହିଛ । ଗୁଣ୍ଡୁଚି ପିଠିରେ ଦାଗ ରହିଛି ପ୍ରାକୃତିକ କାରଣରୁ । କିନ୍ତୁ ମଣିଷର ସ୍ମୃତି ଏପରି ଯେ ସେ କାହାର ଉପକାର ବା ଅପକାର ସହଜରେ ଭୁଲେ ନାହିଁ । ଗୁଣ୍ଡୁଚି ଏକ ମହାନ୍ କାମରେ ସହାୟତା କରି ଯେଉଁ ଦିବ୍ୟ ସ୍ନେହର ସ୍ପର୍ଶ ପାଇଥିଲା, ସେହି ସ୍ମୃତିକୁ ବଞ୍ଚାଇ ରଖିବା ପାଇଁ ତା' ପ୍ରାକୃତିକ ଦାଗ ସହିତ ମଣିଷର କଳ୍ପନା ତା' କୃତିତ୍ୱକୁ ଯୋଡ଼ି ଦେଇଛି । ଏହା ଏକ ମଧୁର ସଂଯୋଗ ।"

ଏହାପରେ ବୃହସ୍ପତି ସେମାନଙ୍କୁ ନିଜ ଅଭିଜ୍ଞତାରୁ ମହାବଳୀ ତଥା ଅମରର କଥା ଶୁଣାଇଲେ ।



# ହାତୀ

ଗୋଟିଏ ଗାଁରେ ଛତରସିଂ ଓ ସୁଜାନସିଂ ନାମରେ ଦୁଇଟି ଚାଷୀ ଥିଲେ । ଛତରସିଂ ଗରିବ, ସୁଜାନସିଂ ଧନୀ ।

ଥରେ ଛତରସିଂ ଦେଶୀଆଳୁ ଲଗାଇ ଥିଲା । ସେଥର ଏତେ ଭଲ ଫସଲ ହୋଇଥିଲା ଯେ ଗୋଟାଏ ଗୋଟାଏ ଦେଶୀଆଳୁ ଯେମିତି ଗୋଟାଏ ଗୋଟାଏ ହାତୀ ! ସେଥିରୁ ଗୋଟିଏ ନେଇ ସେ ରାଜାଙ୍କୁ ଭେଟି ଦେଲା । ଏଡ଼େ ବଡ଼ ଦେଶୀଆଳୁ ଦେଖି ରାଜା ଆଶ୍ଚର୍ଯ୍ୟ ହେଲେ ଓ ତାକୁ ବହୁତ ଧନ ପୁରସ୍କାର ଦେଲେ ।

ଏକଥା ଶୁଣି ସୁଜାନସିଂ ମନରେ ଈର୍ଷା ହେଲା । ସେ ଭାବିଲା ହାତୀ ପରି ବଡ଼ ଦେଶୀଆଳୁ ଦେବାରୁ ତାକୁ ଏତେ ପୁରସ୍କାର ମିଳିଲା, ଯଦି ମୁଁ ହାତୀଟିଏ ରାଜାଙ୍କୁ ଦିଏ ତାହାହେଲେ କ'ଣ ବା ମତେ ନ ମିଳିବ ? ତେଣୁ ସେ ହାତୀଟିଏ କିଣି ରାଜାଙ୍କୁ ଭେଟି ଦେଲା ।

ରାଜା ମନ୍ତ୍ରୀଙ୍କୁ ପଚାରିଲେ, "ଏହାକୁ କି ପୁରସ୍କାର ମିଳିବ ?" "ମହାରାଜ ! ଯିଏ ହାତୀ ଭେଟି ଦେଇପାରେ ତା'ର ଧନର ଦରକାର କ'ଣ ? ହାତୀପରି ଦିଶୁଥିବା ଦେଶୀଆଳୁଟି ତାକୁ ଦେଇ ବିଦା କରି ଦିଅନ୍ତୁ ।"

ରାଜା ଛତରସିଂ ଠାରୁ ପାଇଥିବା ହାତୀପରି ଦେଶୀଆଳୁଟି ସୁଜାନସିଂକୁ ପୁରସ୍କାର ଦେଲେ ।





# ଅଭ୍ୟାସ ମୋଚନ

ଜଗନ୍ନାଥ ବୋଲି ଜଣେ କୃଷକ ଥିଲା ।

ବିବାହର ବହୁ ବର୍ଷ ପରେ ତା'ର ଗୋଟିଏ ପୁଅ ହେଲା । ତା'କୁ ସେ ଅତି ଗେହ୍ଲାରେ ବଢାଇଲା । ପୁଅଟିର ନାମ ବିଶ୍ୱନାଥ । ସେ ଧୀରେ ଧୀରେ ବଡ଼ ହୋଇ ବାପକୁ କାମ ଦାମରେ ସାହାଯ୍ୟ କଲା ।

କିନ୍ତୁ ତା'ର ଗୋଟିଏ ଖରାପ ଅଭ୍ୟାସ ଥିଲା ଯେ ସେ ସକାଳେ ବହୁତ ବେଳ ପର୍ଯ୍ୟନ୍ତ ଶୋଇ ରହୁଥିଲା । ନିଦରୁ ଉଠି ବାପା ପାଇଁ ଖାଦ୍ୟ କ୍ଷେତକୁ ନେଇ ଯାଉଥିଲା ଓ ବାପ ସହିତ କିଛି କିଛି କାମ ମଧ୍ୟ କରୁଥିଲା ।

ପୁଅର କର୍ମ ଓ ପରିଶ୍ରମ ଦେଖି ଜଗନ୍ନାଥ ଖୁସି ହେଲେ ମଧ୍ୟ ଭାବୁଥିଲା, "ସକାଳେ ଯିଏ ନ ଉଠେ, ସିଏତ ଅଳସୁଆ; କି କାମ ଶିଖାଇବ ? ଆଉ ମୋର ମୃତ୍ୟୁ ପରେ ବା ଇଏ କରିବ କ'ଣ ?" ଏଇ ଭୟରେ ସେ ପୁଅକୁ ସକାଳେ ଉଠେଇବା ପାଇଁ ଅନେକ ଚେଷ୍ଟା କଲା । ସବୁବେଳେ ସେହିକଥା ଚିନ୍ତା କଲା । ପଇସା ଜମେଇ ରଖିବା ପାଇଁ ଯଥେଷ୍ଟ ସୁଯୋଗ ନାହିଁ । ଯାହା ଆସେ ଖର୍ଚ୍ଚ ହୋଇଯାଏ । ତେବେ ସେ ବଞ୍ଚିଥିବା ପର୍ଯ୍ୟନ୍ତ ଯେମିତି ହେଉ ଚଳିଯିବ । ପରେ କ'ଣ ହେବ ଭାବି ତା'ର ଶାନ୍ତି ନଷ୍ଟ ହେଲା । ଦିନେ ସେ ତା'ର ଶଳା ଆଗରେ ଏକଥା କହି ଦୁଃଖ କଲା ।

ଥରେ କୌଣସି ଏକ କାର୍ଯ୍ୟ ପାଇଁ ଜଗନ୍ନାଥକୁ ପଡ଼ୋଶୀ ଗାଁକୁ ସପ୍ତାହେ ପର୍ଯ୍ୟନ୍ତ ଯିବା ପାଇଁ ପଡ଼ିଲା । ସେ ପୁଅକୁ ଶ୍ୱଶୁର ଘରେ ଛାଡ଼ି ଚାଲିଗଲା ।

ବିଶ୍ୱନାଥ ଯେଉଁଦିନ ମାମୁ ଘରେ ଯାଇ ପହଞ୍ଚିଲା, ତା'ର ଦୁଇଦିନ ପରେ ସେଠାରୁ କିଛି ଜିନିଷ ଚୋରି ହୋଇଗଲା । ସକାଳୁ ଉଠି ମାମୁଁ ମାଇଁ ଦୁହେଁ କାମକୁ ଚାଲିଯାଇ ଥିଲେ । ବିଶ୍ୱନାଥ ଘରେ ଥିବାବେଳେହିଁ ଚୋରି ହୋଇଛି ।

ଗୁରୁଚରଣ

ମାମୁଁ ବିଶ୍ୱନାଥକୁ କହିଲେ, "ଦିନ ଦିପହରରେ ତୁ ଘରେ ଥିବାବେଳେ ଚୋରି ହେଲା, ଏ ଚୋରି ତୋ ଆଖି ଏଡ଼ାଇଗଲା କିପରି ? ଲାଗୁଛି ତୁ ହିଁ ଚୋରି କରିଛୁ ।" ପଡ଼ୋଶୀମାନେ ମଧ୍ୟ ସବୁ ଶୁଣି ଭାବିଲେ ବିଶ୍ୱନାଥହିଁ ଚୋରି କରିଛି ।

ବିଶ୍ୱନାଥ ଚୋରି ଯେ କରିନି ତାହା ବୁଝାଇବାକୁ ସେ ବହୁତ ଚେଷ୍ଟା କଲା । ସେ କହିଲା, ଚୋରି ବିଷୟ ସେ କିଛି ଜାଣିନି, ଯେହେତୁ ସେ ସେତେବେଳେ ଶୋଇଥିଲା । କିନ୍ତୁ ଶାରୀରିକ ପରିଶ୍ରମ କରିବା ଲୋକ ଏତେ ଡେରି ପର୍ଯ୍ୟନ୍ତ ଶୋଇ ରହିଥିବା କଥା କେହି ମାନିଲେ ନାହିଁ । ଚୋର ଭାବରେ ଅଭିଯୁକ୍ତ ହେବା ଯୋଗୁ ବିଶ୍ୱନାଥର ମନରେ ବହୁତ ଦୁଃଖ ହେଲା । ସେ ବାପ ଆସିବାକୁ ବାଟ ଚାହିଁ ବସିଲା । ଦୁଇ ତିନି ଦିନ ପରେ ବାପ ଫେରି ଆସିଲା । ସେ ପୁଅକୁ ଚୋରି ଯୋଗୁ ସନ୍ଦେହ କରାଯାଇଛି ଶୁଣି ବହୁତ ରାଗିଲା । ସେ କହିଲା, "ମୋ ପୁଅ କଦାପି ଚୋରି କରିବ ନାହିଁ । ତମେ ସବୁ ତା' ଉପରେ ମିଥ୍ୟା ଦୋଷାରୋପ କରୁଛ ।" କିନ୍ତୁ ଜଗନ୍ନାଥର କଥାରେ ବିଶ୍ୱନାଥର ମାମୁଁ କିଛି ଉତ୍ତର ଦେଲେ ନାହିଁ । ପରେ ଜଗନ୍ନାଥ ପୁଅକୁ ନେଇ ଘରକୁ ଫେରି ଆସିଲା ।

କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ ପରଦିନ ଜଗନ୍ନାଥ ଉଠିବା ଆଗରୁ ବିଶ୍ୱନାଥ ଉଠି ପଡ଼ୁଥାଏ । ସେତେବେଳେ ଯାଇ ଜଗନ୍ନାଥ ବୁଝିପାରିଲା "ଚୋରି" ଘଟଣାଟି ସମ୍ପୂର୍ଣ୍ଣ ମିଥ୍ୟା । କେବଳ ପୁଅର ଖରାପ ଅଭ୍ୟାସ ଛଡ଼ାଇବା ପାଇଁ ତା' ମାମୁଁ ଏପରି କରିଛି । ତେଣୁ ସେ ଶଳା ଉପରେ ରାଗିବା ପରିବର୍ତ୍ତେ ବର୍ତ୍ତମାନ କୃତଜ୍ଞତା ଜଣାଇଲା ।

ପରେ ଦେଖା ହେବାରୁ ଜଗନ୍ନାଥର ଶଳା କହିଲେ, "ଦେଖିଲ ତ ଭିଣୋଇ ସାଆନ୍ତେ, ତୁମ ପୁଅର ଏଇ ଛୋଟ ଅଭ୍ୟାସକୁ ଛଡ଼ାଇବା ପାଇଁ ମୋତେ କେତେ କଷ୍ଟ କରିବାକୁ ହେଲା ! ଯାହାକିଛି ଖରାପ ଅଭ୍ୟାସ ତାକୁ ମୂଳରୁ ନ ମାରିଲେ ପରେ ଛଡ଼େଇବାକୁ ବହୁତ କଷ୍ଟ ହୁଏ ।"





# ଶୁଆ-ସମସ୍ୟା

ଗୋଟିଏ ଗାଁରେ ଗୋଟିଏ ବୁଢ଼ୀ ଥିଲା । ତା'ର ଥାଏ ଗୋଟିଏ ନାତୁଣୀ । ପିଲାଟିକୁ ବୁଢ଼ୀ ଏତେ କଡ଼ା ନଜରରେ ରଖିଥାଏ ଯେ ସେ ବିଚରା ଘରୁ ବାହାରକୁ ଯାଇ ସାଙ୍ଗସାଥିଙ୍କ ସହିତ ଖେଳିପାରେନି । ବୁଢ଼ୀ ଡରରେ ବାହାରୁ ମଧ୍ୟ ପିଲାମାନେ ତା' ଘରକୁ ଆସନ୍ତି ନାହିଁ ।

ତେଣୁ ନାତୁଣୀକୁ ଘରଟା ଜେଲଖାନା ପରି ଲାଗିଲା । ସେହି ଘରେ ବୁଢ଼ୀର ଗୋଟିଏ ଶୁଆ ଥିଲା । ନାତୁଣୀ ଦେଖେ ତାର ବୟସର ଛୁଆମାନେ ନାଚକୁଦ ହସି ଖେଳୁଛନ୍ତି । କିନ୍ତୁ ତା'ର ବାହାରକୁ ଯାଇ ଖେଳିବାର ଉପାୟ ନାହିଁ । ସେଥିପାଇଁ ତା' ମନରେ ଖୁବ୍ ରାଗ ଆସେ । ବୁଢ଼ୀ ଡରରେ କିଛି କଥା ମୁହଁ ଖୋଲି କହି ପାରେନାହିଁ । କିନ୍ତୁ ବୁଢ଼ୀ ଯେତେବେଳେ ଘରେ ନ ଥାଏ ସେ ରାଗରେ କହେ, "ବୁଢ଼ୀଟା ମରିଯାଆନ୍ତା କି, ଭଲ ହୁଅନ୍ତା ।"

ଶୁଆଟି ମଧ୍ୟ କ୍ରମେ ନାତୁଣୀର ସେହି ବାକ୍ୟଟି ଶିଖିନେଲା । ଦିନେ ବୁଢ଼ୀ ଆଗରେ ଶୁଆ କହିଲା, "ବୁଢ଼ୀଟା ମରିଯାଆନ୍ତା କି, ଭଲ ହୁଅନ୍ତା !"

ଶୁଆ ମୁହଁରୁ ଏକଥା ଶୁଣି ବୁଢ଼ୀ ଆଶ୍ଚର୍ଯ୍ୟ ହୋଇଗଲା । ସେ ବୁଝିପାରିଲା ନାହିଁ ସାରାଦିନ ପିଞ୍ଜରାରେ ଆବଦ୍ଧ ଏହି ଶୁଆ ଏକଥା କେଉଁଠୁ ଶିଖିଲା । କାରଣ ତା'ର ବିଶ୍ୱାସ ଥିଲା ତା' ନାତୁଣୀ ଅନ୍ତତଃ ଏପରି କଥା କହିବ ନାହିଁ । ତା' ଛଡ଼ା ବୁଢ଼ୀ ବ୍ୟତୀତ ନାତୁଣୀର ଦ୍ୱିତୀୟ ଲୋକ ସଂସାରରେ କେହି ନଜର ହୋଇ ନାହିଁ । ଏପରି ସ୍ଥଳେ ସେ କ'ଣ ଏପରି କଥା କହିପାରେ!

ଦିନେ ବୁଢ଼ୀ ଘରକୁ ପଡ଼ୋଶୀ ଘରୁ ଆଉ

ମଙ୍ଗଳାପ୍ରସାଦ

ଜଣେ ବୁଢ଼ୀ ବୁଲି ଆସିଲା । ଦୁହେଁ ବସି ଦୁଃଖ-ସୁଖ କଥାବାର୍ତ୍ତା ହେଉଛନ୍ତି, ଏହି ସମୟରେ ହଠାତ୍ ଶୁଆଟି କହିଉଠିଲା, "ବୁଢ଼ୀଟା ମରିଯାଆନ୍ତା କି, ଭଲ ହୁଅନ୍ତା ।" ଏ କଥା ଶୁଣି ପଡ଼ୋଶୀ ବୁଢ଼ୀ ରାଗି ଉଠି ଚାଲିଗଲା । ଏ ଘଟଣାରେ ବୁଢ଼ୀର ମନ ବହୁତ ଦୁଃଖ ହେଲା । ସେ ବୁଝିଲା ଯେ ପଡ଼ୋଶୀ ବୁଢ଼ୀକୁ ବହୁତ ଅପମାନ ହେଲା ।

ବୁଢ଼ୀ ବସି ବସି ଚିନ୍ତା କଲା, ଯେପରି ହେଉ ଶୁଆର ଏ ବଦଭ୍ୟାସ ଛଡ଼ାଇବାକୁ ହେବ । ତା' ଘର ନିକଟରେ ଜଣେ ପଣ୍ଡିତଙ୍କର ଘର ଥିଲା । ତାଙ୍କ ଘରେ ମଧ୍ୟ ଗୋଟିଏ ଶୁଆ ଥିଲା । ତେଣୁ ବୁଢ଼ୀ ଭାବିଲା ପଣ୍ଡିତଙ୍କର ନିଶ୍ଚୟ ଶୁଆ ବିଷୟରେ ଅଧିକ ଜ୍ଞାନ ଥିବ ।

ବୁଢ଼ୀ ପଣ୍ଡିତଙ୍କ ଘରକୁ ଯାଇ ପଚାରିଲା, "ପଣ୍ଡିତଜୀ, ମୋ ଶୁଆ ଖରାପ କଥା କହିବା କେଉଁଠୁ ଶିଖିଛି । ମୋ ଘରକୁ କୌଣସି ଭଦ୍ରଲୋକ ଆସିଲେ ହୁଏତ କେବେ କିଛି ଅସୁନ୍ଦର କଥା ଏ ଶୁଆ କହିଦେଇପାରେ । ତେଣୁ ଦୟା କରି କିଛି ଉପାୟ କୁହନ୍ତୁ !"

"ଆମ ଶୁଆ ମୁହଁରୁ କେବେ ମଧ୍ୟ ଖରାପ କଥା ବାହାରି ନାହିଁ । ଯଦି ଚାହଁ, ଆମ ଶୁଆକୁ ତୁମ ଶୁଆସହିତ ଚାରି ପାଞ୍ଚଦିନ ରଖ । ସେ ଭଲ କଥା ଶିଖିଯିବ ।" ପଣ୍ଡିତ କହିଲେ ।

ବୁଢ଼ୀ ଆନନ୍ଦ ମନରେ ପଣ୍ଡିତଙ୍କ ଶୁଆକୁ ଆଣି ନିଜ ଶୁଆ ସହିତ ରଖିଲା ।

କିନ୍ତୁ ନୂଆ ଶୁଆକୁ ଦେଖି ଘରର ଶୁଆଟି ଆଖି ତରାଟି ରାଗି କହିଲା, "ଏହି ବୁଢ଼ୀଟା ମରିଯାଆନ୍ତା କି, ଭଲ ହୁଅନ୍ତା ।"

ସଙ୍ଗେ ସଙ୍ଗେ ପଣ୍ଡିତଙ୍କ ଶୁଆ ମୁଣ୍ଡ ହଲାଇ ଚିତ୍କାର କରି ଉଠିଲା, "ତଥାସ୍ତୁ" ।

ବୁଢ଼ୀର ରାଗ ଦଶଗୁଣ ବଢ଼ିଗଲା । ସେ ପିଞ୍ଜରାଟି ଖୋଲି ଦେଲା ଓ ଦୁଇ ଶୁଆଙ୍କୁ ଛାଡ଼ି ଦେଇ କହିଲା, "ଯାଅ, କେଉଁଠି ଯାଇ ମର ।"



# ତୃତୀୟା !

ରାମନାଥ ଓ ସୋମନାଥ ଥିଲେ ଦୁଇ ଧନୀ । ଉଭୟଙ୍କ ଘରେ ବିବାହଯୋଗ୍ୟ ଦୁଇ କନ୍ୟା ଥିଲେ । ଉଭୟେ ଚାହୁଁ ଥିଲେ ତୃତୀୟ ଧନୀ ସୀତାରାମର ପୁଅ ସହ ଯେପରି ନିଜ କନ୍ୟାର ବିବାହ ହୁଏ ।

ଉଭୟେ ଅଲଗା ଅଲଗା ଭାବରେ ଘଟକ ଗୁରୁଚରଣଙ୍କୁ ପ୍ରସ୍ତାବ ପକ୍‌କା କରିବା ପାଇଁ ପାଞ୍ଚ ପାଞ୍ଚ ହଜାର ଟଙ୍କା ଦେଇଥାନ୍ତି ।

ହଠାତ୍ ମଝିରେ ଗୁରୁଚରଣ କେଇଦିନ କୁଆଡ଼େ ଚାଲିଗଲା । ପରେ ଖବର ମିଳିଲା ଯେ ସୀତା-ରାମର ପୁଅ ସହ ଘଟକର ନିଜ ଝିଅର ବିବାହ ହୋଇଗଲା ।

"ହଇହେ, ତୁମେ ଇଏ କ'ଣ କଲ ?" ରାମନାଥ ଓ ସୋମନାଥ ଅଲଗା ଅଲଗା ଗୁରୁଚରଣକୁ ପଚାରିଲେ ।

"ଆରେ ଭାଇ, ସୀତାରାମର ପୁଅକୁ ମୁଁ ବାରମ୍ବାର ଆମ ଘରକୁ ଡାକି ଆଣି ତୁମ ଝିଅକୁ ବିଭା ହେବା ପାଇଁ କହୁଥାଏ । ସେ ଯେ ଏହା ଭିତରେ ମୋ ଝିଅକୁ ଦେଖି ବିଭା ହେବାକୁ ଅଳି କରିବ, ସେ କଥା ମୁଁ କିପରି ଜାଣିଥାନ୍ତି ?" ଗୁରୁଚରଣ ଉଭୟଙ୍କୁ ସମାନ ଉତ୍ତର ଦେଲା ।






# ଚୋରର ପ୍ରାର୍ଥନା

ଚୋର ଜଗୁସିଂହ ରାତିରେ ଚୋରି କରିବାକୁ ଯିବା ବେଳେ ଗାଁର ଶିବ ମନ୍ଦିର ଆଗରେ ମୁଣ୍ଡିଆ ମାରି କହୁଥାଏ, "ମୋ କାମ ଯେପରି ନିର୍ବିଘ୍ନରେ ହୋଇଯିବ !" ସେ କେବେ ଧରା ପଡ଼ୁ ନ ଥାଏ । ଭାବୁଥାଏ, ଈଶ୍ୱର ତା'ର ସହାୟତା କରୁଛନ୍ତି ।

ଦିନେ ଜଗୁ ଜଣେ ମହାଜନଙ୍କ ଘରେ ସିନ୍ଧି କରିବାକୁ ଯାଇ ସେ ବହେ ଛେଚା ପାଇଲା । ସେଠାରୁ ଖସି ଆସି ସେ ଶିବ ମନ୍ଦିର ଆଗରେ କହିଲା, "ଈଶ୍ୱର ! ତୁମେ ଇଏ କପରି କାମ କଲ ? ଏଣିକି ତୁମ ଉପରେ ମୋର ଆଉ ବିଶ୍ୱାସ ରହିବ କି ? ଆଜି ତ ମୋ ପ୍ରାଣ ଯାଉ ଯାଉ ରହିଗଲା !"

ପରଦିନ ଜଣେ ସାଧୁ ତାଙ୍କ ଚେଲାମାନଙ୍କ ଗହଣରେ ସେ ଗାଁରେ ଆସି ଡେରା ପକାଇଲେ । ଗାଁ ଲୋକେ ନାନା ପ୍ରକାରେ ସାଧୁଙ୍କ ଚର୍ଚ୍ଚା କଲେ । ଜଗୁ ମଧ୍ୟ ଭାବିଲା ସାଧୁ ନିଶ୍ଚୟ ଜଣେ ଦେବତା । ସେ ସବୁ ରାତିରେ ସାଧୁ ପାଖରେ ଯାଇ କହେ, "ମୋ କାମ ଯେପରି ସୁରୁଖୁରୁରେ ସମାଧାନ ହୁଏ ।"

"ତଥାସ୍ତୁ !" ସାଧୁ ମହାରାଜ କହନ୍ତି ।

ଦିନେ ଜଗୁ ଶୁଣିଲା ଯେ ସାଧୁ ପାଖ ଗାଁର ଜଣେ ଧନୀକଙ୍କ ଘରକୁ ପୂଜା ପାଇଁ ଯାଉଛନ୍ତି । ସାଧୁ ବାହାରିଯିବା ପୂର୍ବରୁ ହିଁ ସେ ଯାଇ ସାଧୁଙ୍କ ଆଶୀର୍ବାଦ ସଂଗ୍ରହ କଲା ।

ସାଧୁ ଯେଉଁ ଧନୀକଙ୍କ ଘରକୁ ଯାଇଥିଲେ, ଜଗୁ ତାଙ୍କର ଘରୁ ଚୋରି କରିବାକୁ ମନସ୍ଥ କଲା । ମଝି ରାତିରେ ସେ ସେଠାରେ ପହଞ୍ଚିବା ବେଳକୁ ସମସ୍ତେ ଶୋଇଛନ୍ତି । ସାଧୁଙ୍କ ଚେଲା-ମାନେ ଧନୀକଙ୍କ ହତା ଭିତରେ ଥିବା ମନ୍ଦିର ଚଟାଣରେ ଶୋଇଥିଲେ । ମନ୍ଦିର ଦ୍ୱାର ଅଳ୍ପ ଖୋଲା ଥିଲା ।

ଜଗୁ ଛପି ଛପି ହଠାତ୍ ମନ୍ଦିର ଭିତରେ ପଶିଯାଇ ଦେଖିବା ବେଳକୁ ସାଧୁ ବିଗ୍ରହ

କିରଣ କୁମାରୀ

ଦେହରୁ ଅଳଙ୍କାରମାନ ଖୋଲୁଛନ୍ତି । ଜଗୁକୁ ଦେଖି ସାଧୁ ଚମକି ପଡ଼ିଲା ଭଳି ଲାଗିଲା । କିନ୍ତୁ ସେ କହିଲେ, "କିହୋ ଭକ୍ତ, ଆସିଗଲ ? ତୁମରି ପାଇଁ ମୁଁ ଅଳଙ୍କାରତକ ଖୋଲୁଥିଲି । ତୁମେ ଆସିବ ବୋଲି ମୁଁ ଜାଣିଥିଲି । ନିଅ । ଯାଅ ।" ସାଧୁ ଗୋଟାଏ ପୁଟୁଳିରେ ଅଳଙ୍କାରତକ ବାନ୍ଧି ଜଗୁକୁ ଦେଇଦେଲେ ।

ଜଗୁର ବିସ୍ମୟ ଓ ଆନନ୍ଦ କଥା କହିଲେ ନ ସରେ । ସେ ସାଧୁଙ୍କୁ ପ୍ରଣାମ କରି କହିଲା, "ହେ ସର୍ବଜ୍ଞ ମହାତ୍ମା ! ଏ ଅଧମ ପ୍ରତି ସର୍ବଦା କୃପା ରଖିଥାନ୍ତୁ ।" ଏହାପରେ ସେ ଚାଲିଗଲା ।

ଶିବ ମନ୍ଦିର ଆଗରେ ସେ ଦିଅଁଙ୍କୁ ଲକ୍ଷ୍ୟ କରି କହିଲା, "ଦେଖିଲ, ଈଶ୍ୱର ? ସାଧୁ ମୋତେ ରକ୍ଷା ବି କରୁଛନ୍ତି, ମୋର ସହାୟତା ବି କରୁଛନ୍ତି । ତୁମେ କିଛି କାମର ନୁହଁ !"

କହିବା ବାହୁଲ୍ୟ, ସାଧୁଟି ଥିଲେ ଛଦ୍ମବେଶୀ ଚୋର । ରାତିରେ ଗୋଳମାଳ ହେବ ବୋଲି ସିନା ସେ ଅଳଙ୍କାର ପୁଟୁଳା ଜଗୁକୁ ଦେଇପକାଇଲେ, କିନ୍ତୁ ଜଗୁ ତା' ନିଜ ଘରେ ଗୋଡ଼ ଦେଇଛି କି ନାହିଁ ସାଧୁଙ୍କ ଦଳ ଆସି ତା' ପାଖରୁ ସବୁ ଛଡ଼ାଇ ନେଇ ଚାଲିଗଲେ ।

ଏଣେ ଜଗୁ ଅଳଙ୍କାର ଚୋରି କରିଛି ବୋଲି ସାଧୁ ଗଣନା କରିବାର ଛଳ କରି ଧନୀଙ୍କୁ କହିଲେ । ସକାଳ ହେବା ମାତ୍ରେ ଧନୀଙ୍କ ଲୋକେ ଆସି ଜଗୁକୁ ପକଡ଼ି ନେଲେ । ମନ୍ଦିର ଆଗ ଦେଇ ଗଲାବେଳେ ସେ ଏଥର ଶିବଙ୍କୁ ପ୍ରଣାମ କରି କହିଲା, "ହେ ଈଶ୍ୱର ! ଏଥରକ ଯଦି ମୋତେ ରକ୍ଷା କରିବ, ତେବେ ମୁଁ ଚୋରି କରିବା ଛାଡ଼ିଦେବି !"

ଜଗୁ ଯାଇ ଧନୀଙ୍କ ଘରେ ପହଞ୍ଚିଛି କି ନାହିଁ ଖବର ପହଞ୍ଚିଲା କି ଛଦ୍ମବେଶୀ ସାଧୁ ଓ ତା' ଦଳକୁ ରାଜାଙ୍କ ଜଗୁଆଳିମାନେ ଧରିଛନ୍ତି । ସେମାନଙ୍କ ପାଖରୁ ଧନୀଙ୍କ ଘରୁ ଚୋରି ଯାଇଥିବା ଅଳଙ୍କାରମାନ ମିଳିଛି ।

ଜଗୁକୁ ସଙ୍ଗେ ସଙ୍ଗେ ଛାଡ଼ି ଦିଆଗଲା । ମନ୍ଦିରକୁ ଯାଇ ସେ ବାରମ୍ବାର ପ୍ରଣାମ କରି କହୁଥାଏ, "ଧନ୍ୟ ତୁମ କୃପା, ପ୍ରଭୁ, ତୁମ ବିନା ଏ ଅଧମକୁ କିଏ ରକ୍ଷା କରିଥାଆନ୍ତା ?"





# ରାଜକୀୟ ପ୍ରତିଯୋଗୀ

ପ୍ରାଚୀନ କାଳରେ ବିଜୟପୁରର ରାଜା ଥିଲେ ଅମର ଦେବ । ତାଙ୍କର ଥିଲେ ଦୁଇ ପୁଅ - ବୀରସିଂହ ଓ ଶୂରସିଂହ ।

ଅମରଦେବଙ୍କ ମୃତ୍ୟୁ ପରେ ବୀରସିଂହ ରାଜା ହେଲେ । ଶୂରସିଂହ ନିଜ ବଡ଼ ଭାଇଙ୍କ ପ୍ରତି ଖୁବ୍ ଶ୍ରଦ୍ଧା ପରାୟଣ ଥିଲେ ଓ ରାଜ କାର୍ଯ୍ୟରେ ଯଥେଷ୍ଟ ସହାୟତା କରୁଥିଲେ ।

ହଠାତ୍ ଦିନେ ବୀରସିଂହଙ୍କ ସେନାପତିଙ୍କର ମୃତ୍ୟୁ ହେଲା । ବୀରସିଂହ ସେ ପଦରେ ସାନ-ଭାଇଙ୍କୁ ନିଯୁକ୍ତ କରିବାକୁ ମନ ବଳାଇ ସେକଥା ମନ୍ତ୍ରୀଙ୍କୁ କହିଲେ ।

ମନ୍ତ୍ରୀ ଉତ୍ତର ଦେଲେ, "ମହାରାଜ ! ସେନା-ପତି ନିଯୁକ୍ତି ପାଇଁ ଆମ ଦେଶରେ ଗୋଟିଏ ପରମ୍ପରା ଅଛି । ସେଥି ପାଇଁ ପ୍ରାର୍ଥୀମାନଙ୍କ ଭିତରେ ପ୍ରତିଦ୍ୱନ୍ଦ୍ୱିତା ହୁଏ । ଯିଏ ସଫଳ ହୁଏ, ପଦଟି ତାକୁ ମିଳେ । ଏ ନିୟମ ଭାଙ୍ଗିବା ଅନୁଚିତ ହେବ ।"

ବୀରସିଂହ ଏହା ଶୁଣି ହତାଶ ହେଲେ । ପ୍ରତିଦ୍ୱନ୍ଦ୍ୱିତାରେ ଶୂରସିଂହ ବିଜୟୀ ହେବେ, ଏ ବିଷୟରେ ସେ ନିଶ୍ଚିତ ନ ଥିଲେ ।

ମନ୍ତ୍ରୀ ରାଜାଙ୍କ ମନୋଭାବ ବୁଝି ପାରିଲେ । ସେ କହିଲେ, "ମହାରାଜ ! ଆପଣ ଚିନ୍ତା କରିବାର କାରଣ ନାହିଁ । ଶୂରସିଂହ ନିଶ୍ଚୟ ବିଜୟୀ ହେବେ ।"

ରାଜା ଅଗତ୍ୟା ସେନାପତି ନିର୍ବାଚନ ପାଇଁ ପ୍ରତିଦ୍ୱନ୍ଦ୍ୱିତାର ବ୍ୟବସ୍ଥା କଲେ । ରାଜ୍ୟ ସାରା ଘୋଷଣା କରିଦିଆ ହେଲା ଯେ ନୂଆ ସେନାପତି ଯୋଗ୍ୟ ଯୋଦ୍ଧା ମାନଙ୍କ ମଧ୍ୟରୁ ବଚ୍ଛା ହେବେ । ଯାହାର ସେ ଦିଗରେ ଯୋଗ୍ୟତା ଅଛି, ସେ ପ୍ରତିଦ୍ୱନ୍ଦ୍ୱିତା କରିପାରେ ।

ରାଜ୍ୟରେ ଥିଲେ ସୁଧନ୍ୱା ନାମକ ଜଣେ ଯୁବକ । ସେ ଥିଲେ ଯୁଦ୍ଧ ବିଦ୍ୟାରେ ଅତ୍ୟନ୍ତ କୁଶଳୀ । ସେ ପ୍ରତିଯୋଗିତାରେ ଅବତୀର୍ଣ୍ଣ ହେଉଛନ୍ତି ଶୁଣିବା ମାତ୍ରେ ଅନ୍ୟସବୁ ପ୍ରତିଯୋଗୀ

ଓହରି ଗଲେ । ଶେଷକୁ ରହିଲେ କେବଳ ସୁଧନ୍ୱା ଓ ଶୂରସିଂହ ।

ପ୍ରଥମ ଦିନ ହେଲା ମଲ୍ଲ ଯୁଦ୍ଧ । ସେଥିରେ ଉଭୟଙ୍କ ଦକ୍ଷତା ସମାନ ଭଳି ମନେ ହେଲା । ପରଦିନ ହେଲା ଧନୁର୍ବିଦ୍ୟା ପ୍ରଦର୍ଶନ । ସେଥିରେ ସୁଧନ୍ୱା ଶୂରସିଂହଙ୍କୁ ବଳିଗଲେ । ବୀରସିଂହ ତାହା ଦେଖି ବିମର୍ଷ ବୋଧ କଲେ । ମନ୍ତ୍ରୀ ତାଙ୍କ ମନୋଭାବ ଜାଣି କହିଲେ, "ମହାରାଜ ! ଆପଣ ଚିନ୍ତା କରନ୍ତୁ ନାହିଁ । ଆଗାମୀ କାଲି ହେବ ଖଡ୍ଗ ଯୁଦ୍ଧ । ସେଥିରେ ନିଶ୍ଚୟ ଶୂରସିଂହ ବିଜୟୀ ହେବେ ।"

ପରଦିନ ଖଡ୍ଗ ଯୁଦ୍ଧ ହେଲା । ହଠାତ୍ ପ୍ରତିଦ୍ୱନ୍ଦିତା ମଝିରେ ସୁଧନ୍ୱାଙ୍କ ଖଡ୍ଗ ଭାଙ୍ଗି ଗଲା । ସଙ୍ଗେ ସଙ୍ଗେ ପ୍ରତିଦ୍ୱନ୍ଦିତାର ଚାଳକ ଘୋଷଣା କରି ଦେଲେ ଯେ ଶୂରସିଂହ ବିଜୟୀ ହେଲେ ।

ସୁଧନ୍ୱା ବୁଝି ପାରିଲେ ନାହିଁ ଯେଉଁ ଖଡ୍ଗ ତାଙ୍କୁ ଦରବାର ପକ୍ଷରୁ ଯୋଗାଇ ଦିଆଯାଇ ଥିଲା, ତାହା ଭାଙ୍ଗିଗଲା କିପରି ? ପୁଣି ଖଡ୍ଗ ଭାଙ୍ଗି ଯିବାଟା ତାଙ୍କର ଦୋଷ ନୁହେଁ । ତେଣୁ ତାଙ୍କୁ ଆଉ ଗୋଟିଏ ଖଡ୍ଗ ଯୋଗାଇ ନ ଦେଇ ପ୍ରତିଦ୍ୱନ୍ଦିତା ଶେଷ ହେଲା ବୋଲି କିପରି ଘୋଷଣା କରାଗଲା ? ସେ ରାଜାଙ୍କ ଆଡ଼କୁ ନ୍ୟାୟ ପାଇବା ଆଶାରେ ଅନାଇଲେ । କିନ୍ତୁ ରାଜା ସେତେବେଳେ ଆନନ୍ଦରେ ଶୂରସିଂହଙ୍କୁ ଆଉଁସି ପକାଉଥା'ନ୍ତି ।

ସୁଧନ୍ୱା ନ୍ୟାୟ ଆଶାରେ ମନ୍ତ୍ରୀଙ୍କ ଆଡ଼କୁ ଅନାଇଲେ । କିନ୍ତୁ ମନ୍ତ୍ରୀ ଅନ୍ୟମନସ୍କ ଭାବରେ ଅନ୍ୟ ଆଡ଼େ ଅନାଇଥା'ନ୍ତି । ସୁଧନ୍ୱା ବୁଝି-ପାରିଲେ ଯେ ମନ୍ତ୍ରୀ ଅନ୍ୟମନସ୍କତାର ଛଳନା କରୁଛନ୍ତି ।

ସୁଧନ୍ୱା ଏଥର ଜନତା ଆଡ଼କୁ ଅନାଇଲେ । ସେତେବେଳେ ଜନତା ରାଜା ଓ ରାଜାଙ୍କ ଭାଇଙ୍କୁ ଏକାଠି ଦେଖି ସେହି ଆଡ଼କୁ ଅନାଇ କରତାଳି ଦେଉଥା'ନ୍ତି । ସୁଧନ୍ୱା ଆଡ଼କୁ କେହି ଅନାଇଲେ ନାହିଁ ।

ସୁଧନ୍ୱା ହଠାତ୍ ଅଟ୍ଟହାସ୍ୟ କରି ଭଙ୍ଗା ତରବାରି ଫୋପାଡ଼ି ଦେଇ ଘରକୁ ଚାଲିଗଲେ ।






ବୀର ହନୁମାନ କ୍ଷିପ୍ର ଗତିରେ ଯାଇ ଚନ୍ଦ୍ରସେନାଙ୍କ ନିକଟରେ ପହଞ୍ଚିଲେ । ଚନ୍ଦ୍ରସେନା ଯେଉଁ ଭବନରେ ରହିଥିଲେ, ତାହା ଦୁର୍ଲଭ ଶିଳାରେ ନିର୍ମିତ ଓ ନାନା ଶିଳ୍ପକଳାରେ ସମୃଦ୍ଧ । ଭବନ ବ୍ୟାପି ଲୋହିତ ମଣିମାନ ଖଞ୍ଜା ହୋଇଥାଏ । ଫଳରେ ଅନ୍ଧକାରରେ ମଧ୍ୟ ସେ ଭବନ ଅତ୍ୟନ୍ତ ଭାବରେ ଝଟକୁଥାଏ ।

ଭବନର ମୁଖ୍ୟ ଦ୍ୱାର ଜଗୁଥିବା ରାକ୍ଷସମାନେ କାଳୀ ମନ୍ଦିରରେ ହେଉଥିବା ଉତ୍ସବରେ ଯୋଗ ଦେବା ପାଇଁ ଚାଲି ଯାଇଥିଲେ । ତେବେ ପ୍ରବେଶ ଦ୍ୱାର ପାଖରେ ଦେଖାଗଲା ଏକ ଭୟଙ୍କର ଦାନବ ସର୍ପ ।

ହନୁମାନ ତଥା ଦାନବ ସର୍ପ ଏକ ସମୟରେ ପରସ୍ପରକୁ ଦେଖିଲେ । ଦାନବ ସର୍ପ ତତ୍‌କ୍ଷଣାତ୍ ଫୁତ୍କାର ଛାଡ଼ିଲା । ତା' ମୁହଁ ଓ ନାକରୁ ବାହାରିଲା ଅଗ୍ନିସ୍ଫୁଲିଙ୍ଗ ।

ଦାନବ ସର୍ପ ହନୁମାନଙ୍କୁ ଗିଳି ପକାଇବା ମାନସରେ ତାଙ୍କ ଆଡ଼କୁ ଅଗ୍ରସର ହେଲା । ହନୁମାନ ତାକୁ ମାରି ପକାଇବେ ନା କୌଣସି ପ୍ରକାରେ ଏଡ଼ାଇ ଚାଲିଯିବେ ଭାବୁଥାନ୍ତି, ସେତିକିବେଳେ ଶୁଣିଲେ ଏକ ନାରୀ କଣ୍ଠର ଆର୍ତ୍ତନାଦ ।

ସେ ଆଉ କୌଣସି କଥା ଚିନ୍ତା ନ କରି ସୂକ୍ଷ୍ମରୂପ ଧାରଣ କରି ଦାନବ ସର୍ପର ମୁଖ ଭିତରେ ପଶିଗଲେ ଓ ତା' ପେଟ ଦ୍ୱାରା ବାହାରି ଯାଇ ମହଲ ଭିତରେ ପହଞ୍ଚିଲେ ।

ମହଲ ଭିତର ଅନ୍ଧକାର । ତେବେ, ଏଣେ ତେଣେ ମଣିମାଣିକ୍ୟ ଚହଟୁଥାଏ । ହନୁମାନଙ୍କ କାନରେ ଏଥର ପଡ଼ିଲା ଚାବୁକମାଡ଼ର ଶବ୍ଦ ଏବଂ ପୁନର୍ବାର ସେହି ଆର୍ତ୍ତନାଦ ।



ଶବ୍ଦ ଆସୁଥିବା ଦିଗକୁ ଲକ୍ଷ୍ୟ କରି ହନୁମାନ ଅଗ୍ରସର ହେଲେ । ସେ ଯାଇ ପହଞ୍ଚିଲେ ଚନ୍ଦ୍ରସେନାଙ୍କ କକ୍ଷର ବାତାୟନ ପାଖରେ । କବାଟ ଭିତରୁ ବନ୍ଦ ଥିଲା । ବାତାୟନ ପଥରେ ସେ ଦେଖିଲେ କଣ୍ଟକା ରାକ୍ଷସୀ ଚନ୍ଦ୍ରସେନାକୁ ପିଟୁଛି ଓ କହୁଛି, "ପାତକୀ ! ମହୀରାବଣ ମୂର୍ଖ ବୋଲି ତୋତେ ପାତାଳପୁରୀକୁ ଆଣିଲା । ତୁ ଆମ ପାଇଁ ଗୋଟାଏ ଅଭିଶାପ । କାଳୀ ମାତାଙ୍କ ମନ୍ଦିର ଭିତରକୁ କାହାକୁ ପଠାଇଛୁ, ଶୀଘ୍ର କହିଦେ । ନ ହେଲେ କୁରାଢ଼ୀରେ ତୋ ମୁଣ୍ଡ ଦୁଇଫାଳ କରିଦେବି । ନା, ବରଂ ତୋ ଗଳା ଚିପି ତୋତେ ମାରିପକାଇବି ।" ଏହା କହି ସେ ଚନ୍ଦ୍ରସେନାଙ୍କ ଗଳା ଦୁଇ ହାତରେ ଧରି ଚିପିବାକୁ ଲାଗିଲା ।

ହନୁମାନ ବାତାୟନ ଦେଇ ତାଙ୍କ ପୁଚ୍ଛ ବଢ଼ାଇ ଦେଲେ । ତାହା ଯାଇ କଣ୍ଟକାର ଗଳାରେ ଗୁଡ଼ାଇ ହୋଇଗଲା । କଣ୍ଟକା କାବା ହୋଇ ଚନ୍ଦ୍ରସେନାକୁ ଛାଡ଼ିଦେଲା । ନିମିଷକେ ହନୁମାନଙ୍କ ପୁଚ୍ଛ ଫାସ ରୂପେ ତା' ଗଳାରେ ବସିଯାଇ ତା'ର ପ୍ରାଣ ନେଲା ।

ହନୁମାନ କୋଠରୀର କବାଟରେ ପ୍ରଚଣ୍ଡ ପଦାଘାତ କରି ତାକୁ ଭାଙ୍ଗିଦେଇ ଭିତରେ ପ୍ରବେଶ କଲେ ଓ ଚନ୍ଦ୍ରସେନାଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କଲେ । ତା'ପରେ ସଂକ୍ଷେପରେ ତାଙ୍କୁ ସବୁ ଶୁଣାଇ ମହୀରାବଣକୁ ସଂହାର କରିବାର ଉପାୟ କହିଦେବାକୁ ଅନୁରୋଧ କଲେ ।

ରାମଚନ୍ଦ୍ରଙ୍କ ନାମ ଶୁଣିବା ମାତ୍ରେ ଚନ୍ଦ୍ରସେନା ନିଜର ସବୁ ଦୁଃଖ ପାଶୋରିଦେଲେ । ସେ ପୁଲକିତ କଣ୍ଠରେ କହିଲେ, "ହେ ବୀର ହନୁମାନ ! ତୁମକୁ ମୁଁ ମହୀରାବଣର ଜୀବନ ରହସ୍ୟ କହିଦେଉଛି; କିନ୍ତୁ ତୁମକୁ ମୋତେ ଗୋଟାଏ କଥା ଦେବାକୁ ହେବ । ମହୀରାବଣର ମୃତ୍ୟୁ ପରେ ତୁମେ ଥରେ ରାମଚନ୍ଦ୍ରଙ୍କୁ ଏଠାକୁ ନେଇ ଆସିବ ।"

ହନୁମାନ ସେଥିରେ ସ୍ୱୀକୃତି ଦେଲେ । ଚନ୍ଦ୍ରସେନା ହନୁମାନଙ୍କୁ ମହୀରାବଣର ଜୀବନ

ରହସ୍ୟ ବତାଇଦେଲେ । ହନୁମାନ କାଳବିଳମ୍ବ ନ କରି ସେଠାରୁ ବାହାରିଗଲେ । ଆକାଶରେ ଉଡ଼ିଯାଇ, ସମୁଦ୍ରରେ ପଶି ସାତତାଳ ପାଣି ତଳେ ଥିବା ଜ୍ୱାଳାମୁଖୀ ପଦ୍ମ ପାଖରେ ପହଞ୍ଚିଲେ । ଲହ ଲହ ଅଗ୍ନିଶିଖାରେ ସେ ପଦ୍ମର ପାଖୁଡ଼ାମାନ ନିର୍ମିତ ହୋଇଥାଏ । ହନୁମାନ ଅଗ୍ନିଦେବଙ୍କୁ ସ୍ମରଣ କରି ତତ୍ପରେ କମଳ ଭିତରେ ପ୍ରବେଶ କଲେ ଓ ମକରବିଳ ପାଖରେ ଯାଇ ପହଞ୍ଚିଲେ ।



ମକରବିଳରେ ଭୟଙ୍କର ସାପମାନେ ଫୁତ୍କାର କରୁଥିଲେ । ପିଶାଚଗଣ ଚିତ୍କାର କରୁଥିଲେ । ହନୁମାନ ବଜ୍ର ନିନାଦରେ ସେ ପୁରି ପ୍ରକମ୍ପିତ କରି ସେହିସବୁ ଦୁଷ୍ଟ ଶକ୍ତିମାନଙ୍କୁ ପ୍ରହାର କରି କରି ସେମାନଙ୍କ ମଝିଦେଇ ଯାଇ କରାଳ ଗୁମ୍ଫାରେ ପହଞ୍ଚିଲେ । ସେଠାରେ ଥିବା ଭୂତମାନେ ତାଙ୍କୁ ଦେଖି ଭୀତତ୍ରସ୍ତ ହୋଇ ପଳାଇଗଲେ । କିନ୍ତୁ ଗୋଟାଏ ପ୍ରକାଣ୍ଡ ମୂର୍ତ୍ତି ବିକଟ ରଡ଼ି କରି ଆସି ତାଙ୍କ ଆଗରେ ଠିଆହେଲା । ଆଖି ଲାଲ କରି ସେ ହନୁମାନଙ୍କ ଆଡ଼କୁ ଅନାଇ ଅଟ୍ଟହାସ୍ୟ କଲା ।

"ତୁ କିଏ ? ମୋ ଆଗରୁ ହଟି ଯା !" ହନୁମାନ ଗମ୍ଭୀର କଣ୍ଠରେ କହିଲେ ।

ସେ ଭୟଙ୍କର ମୂର୍ତ୍ତି ଆହୁରି ତୀବ୍ର ଭାବରେ ହସି ଉଠି କହିଲା, ମୁଁ କିଏ ? ମୁଁ ହେଲି ବେତାଳ । ଭୂତ, ପ୍ରେତ, ପିଶାଚଙ୍କ ନେତା । ତୁ କିଏ ? ଆଜିଯାଏ ଏଠାକୁ ମାନ ମହିରାବଣ ବ୍ୟତୀତ ଆଉ କେହି ଆସିବାର ସାହସ କରିନାହିଁ । ତୁ ମହିରାବଣ ନୋହୁଁ । ତେବେ ତୁ କିଏ ?"

ହନୁମାନ ବିଦ୍ରୂପାତ୍ମକ ହସ ହସି କହିଲେ, "ଆରେ ବେତାଳ ! ତୁ ସିନା ଶ୍ମଶାନରେ ଯାଇ ବିଚରଣ କରିବା କଥା ! ତୁ ଏଠି ଅନ୍ଧକାର ଗୁମ୍ଫା ଭିତରେ କରୁଛୁ କ'ଣ ? ଯା, ଯା, ମୋ ଆଗରୁ ହଟି ଯା । ନ ହେଲେ ତୋତେ ମୋ ବଳର ପରିଚୟ ଦେବାକୁ ପଡ଼ିବ ।"

ବେତାଳ ଚମକିପଡ଼ି କହିଲା, "କ'ଣ କହିଲୁ !



ମୋତେ ପୁଣି ଦେବୁ ବଳର ପରିଚୟ ! ଦେଲୁ, ଦେଲୁ !"

ହନୁମାନ ହଠାତ୍ ହାତମୁଠା କରି ବେତାଳ ଉପରେ ପାହାରେ କସିଦେଲେ । ବେତାଳ ଆଖିରେ ଜୁଳୁଜୁଳିଆ ପୋକ ଦେଖିଲା । ତଳେ ପଡ଼ିଯାଇ କୌଣସି ପ୍ରକାରେ ଉଠିବସି ହନୁମାନଙ୍କୁ ପ୍ରଣାମ କରି କହିଲା, "ପ୍ରଭୁ ! ଆପଣ ହନୁମାନ । ମୁଁ ଧନ୍ୟ ହେଲି । ଗୋଟାଏ ଗୁରୁତର ଅପରାଧ କରି ମୁଁ ଶାପଗ୍ରସ୍ତ ହୋଇ ଏଠାରେ ରହିଥିଲି । ମହାଦେବ କହିଥିଲେ, ଆପଣଙ୍କ ସ୍ପର୍ଶ ପାଇଲେ ମୁଁ ଶାପମୁକ୍ତ ହେବି । ଜୟ, ବୀର ହନୁମାନଙ୍କର ଜୟ !"

ଏତକ କହି ବେତାଳ ଅଦୃଶ୍ୟ ହୋଇଗଲା ।

ହନୁମାନ ଯାଇ ଗୁମ୍ଫାର ମଧ୍ୟଭାଗରେ ପହଞ୍ଚିଲେ । ସେଠାରେ ଏକ ଶିଳା ବେଦୀ ଉପରେ ଥିଲା ଗୋଟିଏ ଗୋଲ ରତ୍ନ ପେଟିକା । ତା' ଢାଙ୍କୁଣୀ ଉପରେ ଅଗ୍ନିଶିଖା ଲହ ଲହ ହେଉଥିଲା । ହନୁମାନ ସେ ପେଟିକା ନିକଟରେ ପହଞ୍ଚିବା ମାତ୍ରେ ତାହା ଦାଉ ଦାଉ ଜଳି ଉଠିଲା ଓ ହନୁମାନଙ୍କ ଦେହରେ ନିଆଁ ଝାସ ଲାଗିଲା । ହନୁମାନ ଜୋର୍‌ରେ ନିଃଶ୍ୱାସ ନେଇ ତାପରେ ପ୍ରବଳ ଫୁଙ୍କ ଦ୍ୱାରା ସେ ଅଗ୍ନିକୁ ନିର୍ବାପିତ କରିବାକୁ ଚେଷ୍ଟା କଲେ । କିନ୍ତୁ ସେଥିରେ ବରଂ ତା'ର ତୀବ୍ରତା ବଢ଼ିଗଲା ।

ହନୁମାନ ହାତଯୋଡ଼ି ଅଗ୍ନିଦେବତାଙ୍କୁ ଧ୍ୟାନ କରି କହିଲେ, "ହେ ଦେବ ! ମୁଁ ଆପଣଙ୍କ ମିତ୍ର ବାୟୁଦେବଙ୍କ ପୁତ୍ର । ମୋ ପ୍ରତି ଅନୁଗ୍ରହ କରନ୍ତୁ ।"

ତତ୍‌କ୍ଷଣାତ୍ ଅଗ୍ନି ପ୍ରଶମିତ ହେଲା ଏବଂ ଶିଖା ମଧ୍ୟରୁ ଶୁଭିଲା, "ମାରୁତି ! ମୁଁ ତୁମକୁ ଗୋଟାଏ ବିଷୟ ଚେତାଇ ଦେବା ପାଇଁ ହଠାତ୍ ତୀବ୍ର ଆକାର ଧାରଣ କରିଥିଲି । ତୁମେ ଯଦି ଏ ପେଟିକା ଭିତରେ ଥିବା ସବୁ ଭ୍ରମରଙ୍କୁ ଏକାଥରେ ମାରିଦେବାକୁ ଚାହଁ, ତେବେ ତୁମେ ପାଞ୍ଚଗୋଟି ମୁଖ ପ୍ରାପ୍ତ କରିବା ଦରକାର । ତାହା ହେଲେ ପାଞ୍ଚ ଭ୍ରମରଙ୍କୁ ଏକାଥରେ ପାଟି



ଭିତରକୁ ଟାଣିନେଇ ଗ୍ରେବାଇଦେଇ ପାରିବ । ଏ କଥା ମନେ ରଖ ।"

ଏହା ଶୁଣି ହନୁମାନ ଅଗ୍ନିଦେବଙ୍କୁ ପ୍ରଣାମ କଲେ ଏବଂ ଭ୍ରମର ସମ୍ବଳିତ ରତ୍ନ ପେଟିକାଟି ଉଠାଇନେଇ ବାୟୁବେଗରେ ଯାଇ ରାମଲକ୍ଷ୍ମଣଙ୍କ ପାଖରେ ପହଞ୍ଚିଲେ । ସେତେବେଳଯାଏ ସେ ଦୁହେଁ ଅଗଣିତ ମହୀରାବଣ ସହ ଯୁଦ୍ଧ କରିବାରେ ବ୍ୟସ୍ତ ଥିଲେ । ହନୁମାନ ହର୍ଷଧ୍ୱନି କରି ମହୀରାବଣ ଆଗକୁ ଯାଇ ପେଟିକା ଦେଖାଇ କହିଲେ, "ପାତାଳଲଙ୍କାର ଅଧିପତି ! ହେଇଟି ତୋ ଜୀବନ ପେଟିକା । ଏଥର ରାମଲକ୍ଷ୍ମଣଙ୍କର ଶରଣ ପଶ ।"

ହନୁମାନ ହାତରେ ସେ ରତ୍ନପେଟିକା ଦେଖି ମହୀରାବଣ ଡରିଗଲା । ଯେପରି ସେ ଧୀରେ ଧୀରେ ରସାତଳକୁ ଖସିଯାଉଛି, ସେହିପରି ଅନୁଭବ କଲା । ତଥାପି ସେ କହିଲା, "ଆରେ ମୂଢ଼ ! ରତ୍ନପେଟିକାରେ ମୋର ପ୍ରାଣ ରହିଛି ଠିକ୍, କିନ୍ତୁ ତୁମମାନଙ୍କ ପାଇଁ ମଧ୍ୟ ସେ ସାକ୍ଷାତ୍ ମୃତ୍ୟୁ ପେଡ଼ି, ଏ କଥା ଜାଣିଥା । ତୁ ପେଟିକା ଖୋଲିବା ମାତ୍ରେ ଭ୍ରମରମାନେ ବାହାରି ଆସିବେ ଓ ତୋତେ ହୁଳ ମାରିବେ । ରାମଲକ୍ଷ୍ମଣଙ୍କୁ ମଧ୍ୟ ମାରିବେ । ସେ ବିଷ ପ୍ରଭାବରୁ କାହାରି ରକ୍ଷା ନାହିଁ । ପ୍ରାଣପ୍ରତି ମୋହ ଥିଲେ ପେଟିକା ତଳେ ରଖିଦେ ।"

ହନୁମାନ ହସିଲେ ଓ କହିଲେ, "ରାମ ଲକ୍ଷ୍ମଣ ନିଦ୍ରାଭିଭୂତ ଥିଲାବେଳେ ତୁ ସେମାନଙ୍କୁ ଏଠାକୁ ନେଇ ପଳାଇଆସି ଯେଉଁ ଅପରାଧ କରିଛୁ, ତୋ ମୃତ୍ୟୁ ପାଇଁ ତାହାହିଁ ଯଥେଷ୍ଟ। ମୃତ୍ୟୁ ପୂର୍ବରୁ ଆଉ ଯେତେ ମାୟା ଜାଣିଛୁ, ଦେଖା ।"

ହନୁମାନଙ୍କର ସାହସ ଦେଖି ମହୀରାବଣ ବିଚଳିତ ହୋଇ ଡାକିଲା, "କଣ୍ଟକା ! ତୁ କେଉଁଠାରେ ? ଚନ୍ଦ୍ରସେନାକୁ ସଙ୍ଗେ ସଙ୍ଗେ ମାରିପକା ।"

ହନୁମାନ ଅଟ୍ଟହାସ୍ୟ କରି କହିଲେ, "ଆରେ ମହୀରାବଣ ! କଣ୍ଟକା କ'ଣ ତୋଠୁ କମ ବୁଦ୍ଧି-

ମଛ ? ସେ ତୁ କହିବା ମୂର୍ଖଟିହିଁ ଚନ୍ଦ୍ରସେନାକୁ ମାରିଦେବାକୁ ଯାଉଥିଲା । କିନ୍ତୁ ଫଳ ହେଲା ଓଲଟା । ସେ ନିଜେ ମଲା ।”

ମହୀରାବଣ ବିପଦ କେତେ ଘନିଭୂତ ତାହା ବୁଝିପାରିଲା । ସେ ଯଥା ସମ୍ଭବ ଚିତ୍କାର କରି ହାତ ପାଖରେ ଯାହା ଅସ୍ତ୍ର ଶସ୍ତ୍ର ମିଳିଲା ସେଥିରେ ରାମଲକ୍ଷ୍ମଣଙ୍କୁ ଆଘାତ କରିବାକୁ ଚେଷ୍ଟା କଲା । ପୁଣି ନିଜକୁ ନିଜେ ଆଘାତ କରି ନିଜ ଦେହରୁ ରକ୍ତ ବୁହାଇ ଦେବାକୁ ଲାଗିଲା । ସେ ରକ୍ତରୁ ନୂଆ ନୂଆ ଅସଂଖ୍ୟ ମହୀରାବଣ ଉଦ୍‌ଭୂତ ହେଲେ ଓ ରାମଲକ୍ଷ୍ମଣଙ୍କୁ ଘେରିଗଲେ । ହନୁମାନ ଆଉ ବିଳମ୍ବ ନ କରି ମହାଦେବଙ୍କୁ ସ୍ମରଣ କରି ପଞ୍ଚମୁଖ ପ୍ରାପ୍ତ ହେଲେ ଏବଂ ପଞ୍ଚମୁଖୀ ହନୁମାନ ରୂପ ପରିଗ୍ରହ କଲେ ।



ପାଞ୍ଚ ମୁଖରେ ହନୁମାନ ଏକ ସମୟରେ ପ୍ରଳୟ ହୁଙ୍କାର ଛାଡ଼ିଲେ । ପରେ ପରେ ସେ ରତ୍ନପେଟିକା ଖୋଲିଦେଲେ । ବିଜୁଳି ବେଗରେ ବଜ୍ର ଭଳି ଗର୍ଜନ କରି ପାଞ୍ଚ ଭ୍ରମର ପେଟିକା ଭିତରୁ ବାହାରି ପଡ଼ିଲେ । ତତ୍‌କ୍ଷଣାତ୍ ପଞ୍ଚମୁଖରେ ହନୁମାନ ସେମାନଙ୍କୁ ଧରିନେଲେ ଓ ଚୋବାଇ ମାରି ତଳେ ପକାଇ ଦେଲେ । ସଙ୍ଗେ ସଙ୍ଗେ ମାୟା ମହୀରାବଣମାନେ ତଳେ ପଡ଼ି ପ୍ରାଣ ଛାଡ଼ିଲେ ।

କିନ୍ତୁ ଅସଲ ମହୀରାବଣ ତଥାପି ବଞ୍ଚିଥାଏ ଓ ରାମଲକ୍ଷ୍ମଣଙ୍କ ଉପରକୁ ଅସ୍ତ୍ର ଛାଡ଼ୁଥାଏ । ରାମ ବିଶେଷ ଶକ୍ତିଶାଳୀ ଅସ୍ତ୍ର ପ୍ରୟୋଗ କରି ତା’ର ଶିରଚ୍ଛେଦ କଲେ ।

ସଙ୍ଗେ ସଙ୍ଗେ ପଞ୍ଚମୁଖୀ ହନୁମାନ ଓ ରାମ ଲକ୍ଷ୍ମଣଙ୍କ ଉପରେ ପୁଷ୍ପବୃଷ୍ଟି ହେଲା । ବ୍ରହ୍ମା ଓ ଶିବଙ୍କ ସମେତ ଦେବଦେବୀଗଣ ସେଠାରେ ଆବିର୍ଭୂତ ହେଲେ । ବ୍ରହ୍ମା କହିଲେ, “ହେ ରାମ ! କାଳନେମିର ଅଂଶରୁ ଏ ମହୀରାବଣ ଜାତ ହୋଇଥିଲା । ଆଜି ହନୁମାନଙ୍କ ପ୍ରଯତ୍ନରେ ତୁମ ଦ୍ୱାରା ତାର ମୃତ୍ୟୁ ଘଟିଲା । ହନୁମାନଙ୍କ ଭିତରେ ଶିବଙ୍କ ବିଭୂତି କାମ କରୁଥିବା ହେତୁ ସେ ମହୋଦଧିର ଅତଳ ଗର୍ଭରୁ ଏ

ରତ୍ନପେଟିକା ଆଣି ପାରିଥିଲେ ।"

ଶିବ ହନୁମାନଙ୍କୁ ଆଶୀର୍ବାଦ ଦେଇ କହିଲେ, "ହନୁମାନ ! ତୁମ ଶକ୍ତି ଓ ଯୁକ୍ତି, ବଳ ଓ ପରାକ୍ରମ ବାସ୍ତବରେ ଅନୁପମ । ମହିରାବଣକୁ ଧ୍ୱଂସ କରିବା ସହଜ କଥା ନୁହେଁ । ସେ କଠିନ କାମ ତୁମେ ସମାଧା କରିଛ ।

"ଆଜିଠାରୁ ଯିଏ ପଞ୍ଚମୁଖୀ ହନୁମାନଙ୍କୁ ସ୍ମରଣ କରିବ, ଭୂତ ପିଶାଚ ଇତ୍ୟାଦି ତା'ର କିଛି କରିପାରିବେ ନାହିଁ ।

ହନୁମାନ ନିଜ ପଞ୍ଚମୁଖୀ ରୂପ ପରିହାର କରି ବ୍ରହ୍ମା ଓ ଶିବଙ୍କୁ ପ୍ରଣାମ କଲେ । ବ୍ରହ୍ମା, ଶିବ ଓ ଦେବଦେବୀମାନେ ରାମଲକ୍ଷ୍ମଣଙ୍କ ବିଜୟ ସକାଶେ ଆଶୀର୍ବାଦ ପ୍ରଦାନ କରି ସେଠାରୁ ବିଦାୟ ନେଲେ ।

ବ୍ରହ୍ମା ଚାଲିଯିବା ପୂର୍ବରୁ ରାମଙ୍କୁ କହିଲେ ସେ ଯେପରି ମକରଧ୍ୱଜଙ୍କୁ ପାତାଳଲଙ୍କାର ରାଜା ରୂପେ ଅଭିଷିକ୍ତ କରନ୍ତି ।

ରାମ ତତ୍‌କ୍ଷଣାତ୍ ମକରଧ୍ୱଜଙ୍କୁ ଡକାଇ ତାଙ୍କୁ ପାତାଳଲଙ୍କାର ସିଂହାସନରେ ଆରୂଢ଼ କରାଇଲେ ।

ଏସବୁ ସରିବା ପରେ ହନୁମାନ ରାମଙ୍କୁ କହିଲେ, "ପ୍ରଭୁ ! ଏଥର ମୁଁ ଯେପରି ମୋର ବାକ୍ୟ ରକ୍ଷା କରିପାରିବି, ସେ ଦିଗରେ ମୋର ସହାୟ ହୁଅନ୍ତୁ । ଚନ୍ଦ୍ରସେନାଙ୍କ ସହାୟତା ବିନା ମୁଁ ମହିରାବଣର ପ୍ରାଣ-ପେଟିକାର ସଂଧାନ ପାଇ ନ ଥାନ୍ତି । ମୁଁ ତାଙ୍କୁ କଥା ଦେଇଥିଲି ଯେ ମହିରାବଣର ମୃତ୍ୟୁ ପରେ ଆପଣଙ୍କୁ ଥରେ ତାଙ୍କ ଭବନକୁ ନେଇଯିବି । ଦୟାକରି ଚାଲନ୍ତୁ ।"

ରାମ ଟିକିଏ ନୀରବ ରହି କହିଲେ, "ବେଶ୍, ଚାଲ ।"

ହନୁମାନ ଅତ୍ୟନ୍ତ ପ୍ରସନ୍ନ ହେଲେ । ସେ ବାଟ ଦେଖାଇ ରାମଲକ୍ଷ୍ମଣଙ୍କୁ ଚନ୍ଦ୍ରସେନାଙ୍କ ଭବନ ଆଡ଼କୁ ନେଇ ଚାଲିଲେ ।





# ରାଜକୁମାରୀ ତାରାବାଈ

ଏକଦା ଜଣେ ଷୋଡ଼ଶୀ ବାଳିକାର ସାହସିକ ଅଭିଯାନ ବିଦେଶୀ ଶତ୍ରୁର ଅନ୍ୟାୟ ଅଧିକାର ମଧ୍ୟରୁ ତାଙ୍କ ପିତାଙ୍କ ରାଜ୍ୟକୁ ମୁକ୍ତ କରି ପାରିଥିଲା । ସେ ବାଳିକାଙ୍କ ନାମ ତାରାବାଈ ।



ଥୋଡ଼ାର ନରପତି ରାଓ ସୁର୍‌ତାନଙ୍କ କନ୍ୟା ଥିଲେ ତାରାବାଈ । ଲିଲ୍ଲା ନାମକ ଆଫ୍‌ଗାନିସ୍ଥାନର ଜଣେ ଶାସକ ଆସି ଥୋଡ଼ା ଅଧିକାର କରିଥିଲେ । ଆରାବଲି ପର୍ବତର ପାଦଦେଶରେ ରାଓ ନିର୍ବାସିତ ଜୀବନ ଯାପୁଥିଲେ । ଟିକି ଝିଅ ତାରା ତାଙ୍କ ପାଖରୁ ତାଙ୍କ ପୂର୍ବପୁରୁଷଙ୍କ କୀର୍ତ୍ତିମାଳୀ ଶୁଣିବାକୁ ସୁଖ ପାଉଥାଏ ।



ଆଫ୍‌ଗାନ୍ ଲିଲ୍ଲା ଥୋଡ଼ା ରାଜ୍ୟକୁ ନିଜର ଚରାଭୂଇଁରେ ପରିଣତ କରିଥାଏ । କିନ୍ତୁ ତା'ର ବିରାଟ ସୈନ୍ୟଦଳକୁ ହରାଇ ରାଓ ନିଜ ରାଜ୍ୟ ପୁନର୍ଦଖଲ କରି ପାରୁ ନ ଥା'ନ୍ତି । ପ୍ରଜାମାନଙ୍କ ନିର୍ଯ୍ୟାତନା ତାଙ୍କୁ ବଡ଼ ଦୁଃଖ ଦେଉଥାଏ ।



ତାରାବାଈ ଯେତକ ଯେତକ ବଡ଼ ହେଲେ, ଥୋଡ଼ାର ଜନତାର ଦୁଃଖ ତାଙ୍କୁ ସେତକ କାତର ଓ ଉତ୍ତେଜିତ କଲା । ସେ ଜଣେ ରାଜପୁତ୍ର ଭଳି ନାନାବିଧ ଯୁଦ୍ଧ କୌଶଳ ଆୟତ୍ତ କରିବାକୁ ଲାଗିଲେ । ଅଚିରେ ସେ ଧନୁର୍ବିଦ୍ୟାରେ ହେଲେ ଅଦ୍ୱିତୀୟା । ଚଳନ୍ତା ଘୋଡ଼ା ପିଠିରୁ ମଧ୍ୟ ସେ ଲକ୍ଷ୍ୟ ସ୍ଥିର କରି ଅବ୍ୟର୍ଥ ଭାବରେ ତୀର ମାରି ପାରୁଥିଲେ ।

"ରାଜକନ୍ୟା ! ତମେ ଏଭଳି ପୁଅପିଲାଙ୍କ ବିଦ୍ୟା ଆୟତ୍ତ କରିବାରେ ବ୍ୟସ୍ତ ରହିଲେ ତମକୁ ବିଭା ହେବ କିଏ ?" ସଖିମାନେ ତାଙ୍କୁ କହୁଥା'ନ୍ତି । "ମୋତେ ବିଭା ହେବ ସବୁଠୁଁ ସାହସୀ ଓ ବୀର ଯିଏ !" ତାରାବାଈ ଉତ୍ତର ଦେଉଥା'ନ୍ତି ।





ତାରାବାଈଙ୍କ ସୌନ୍ଦର୍ଯ୍ୟ ଓ ସାହସର ଖ୍ୟାତି ଚାରିଆଡ଼େ ବ୍ୟାପିଗଲା । ଅନେକ ରାଜପୁତ୍ ରାଜକୁମାର ତାଙ୍କୁ ବିଭା ହେବାକୁ ପ୍ରସ୍ତାବ ଦେଲେ । କିନ୍ତୁ ତାରାବାଈ କହିଦେଲେ, "କେବଳ ଯିଏ ମୋ ବାପାଙ୍କ ରାଜ୍ୟକୁ ଶତ୍ରୁ କବଳରୁ ମୁକ୍ତ କରି ପାରିବ, ମୁଁ ତାକୁହିଁ ବିଭା ହେବ ।"



କିନ୍ତୁ ନିଜ ଜୀବନ ବିପନ୍ନ କରି ଭୟଙ୍କର ଆଫ୍‌ଗାନ୍ ଶାସକକୁ ହଟାଇବାକୁ ଚାହାଁନ୍ତି ବା, କିଏ ? ସମସ୍ତେ ପଛଘୁଞ୍ଚା ଦେଲେ । କିନ୍ତୁ ମେବାରର ରାଜପୁତ୍ର ପୃଥ୍ୱୀରାଜ ଆସି ରାଓଙ୍କୁ ଦେଖା କରି କହିଲେ ଯେ ସେ ଆଫ୍‌ଗାନ୍ ଶତ୍ରୁ ବିରୁଦ୍ଧରେ ଲଢ଼ିବାକୁ ପ୍ରସ୍ତୁତ !



ପୃଥ୍ୱୀରାଜଙ୍କ ସାହସ କଥା ତାରାବାଈ ପୂର୍ବରୁ ଶୁଣି ଥିଲେ । ସେ ଆନନ୍ଦିତ ହେଲେ ଓ କହିଲେ, ସେ ନିଜେ ମଧ୍ୟ ତାଙ୍କ ସହ ଶତ୍ରୁ ଉପରେ ଚଢ଼ାଉ କରିବାକୁ ଯିବେ । ୫୦୦ ବିଶ୍ୱସ୍ତ ଓ ଶକ୍ତିଶାଳୀ ସୈନ୍ୟ ଧରି ଦୁହେଁ ଟୋଡ଼ା ଅଭିମୁଖେ ଚାଲିଲେ ।



ସେତେବେଳେ ଟୋଡ଼ା'ରେ ଉତ୍ସବ ଚାଲିଥାଏ । ଦୁର୍ଗର ଦ୍ୱିତଳ ବାରଣ୍ଡାରେ ବସି ଶାସକ ଲଲ୍ଲା ନିଜ ସୈନ୍ୟ ବାହିନୀର ଶୋଭା ଯାତ୍ରା ଦେଖି ଆମୋଦିତ ହେଉଥାଏ । ସେତେବେଳକୁ ସନ୍ଧ୍ୟା ।



ନିଜର କ୍ଷୁଦ୍ର ସୈନ୍ୟଦଳକୁ ବାହାରେ ରଖି ପୃଥ୍ୱୀରାଜ ଓ ତାରାବାଈ ଜନତା ସହ ମିଶି ଦୁର୍ଗ ଭିତରେ ପଶିଗଲେ । କିନ୍ତୁ ଲିଲ୍ଲା ସେମାନଙ୍କୁ ଦେଖି ପାଟି କଲା, "ଏ ଦୁହେଁ କିଏ ?" ତତ୍‌କ୍ଷଣାତ୍ ପୃଥ୍ୱୀରାଜଙ୍କ ଦ୍ୱାରା ନିକ୍ଷେପିତ ବର୍ଚ୍ଛା ଓ ତାରାବାଈଙ୍କ ତୀର ଯାଇ ଲିଲ୍ଲାକୁ ନିହତ କଲା । ସେ କୋଳାହଳ ଭିତରେ ଉଭୟେ ଦୁର୍ଗ ଫାଟକ ଆଡ଼କୁ ଘୋଡ଼ା ଛୁଟାଇ ଦେଲେ ।



ଆଫ୍‌ଗାନ୍ ସୈନ୍ୟମାନେ ସେ ଦୁହିଙ୍କୁ ଅଟକାଇବା ପାଇଁ ଫାଟକ ରକ୍ଷୀକୁ ନିର୍ଦ୍ଦେଶ ଦେଲେ । ରକ୍ଷକ ଫାଟକ ଆଗରେ ଗୋଟାଏ ହାତୀ ଠିଆ କରାଇ ଦେଲା । କିନ୍ତୁ ତାରାବାଈ ନିଜ ତରବାରି ଦ୍ୱାରା ହାତୀର ଶୁଣ୍ଢ କାଟି ଦିଅନ୍ତେ ସେ ଅତର୍ଚ୍ଛରେ ପଳାଇ ଗଲା । ଦୁହେଁ ବାହାରକୁ ଖସି ଗଲେ ।



ସେମାନଙ୍କୁ ଅନୁସରଣ କରି ଆଫ୍‌ଗାନ୍‌ମାନେ ଦୁର୍ଗ ବାହାରକୁ ଆସିବା ମାତ୍ରେ ତାରାବାଈଙ୍କ ୫୦୦ ସୈନ୍ୟ ସେମାନଙ୍କୁ ଆକ୍ରମଣ କଲେ । ସେମାନେ ଛିନ୍ନଛିନ୍ନ ହୋଇ ଗଲେ । ଥୋଡ଼ା ଉପରେ ଆଫ୍-ଗାନ୍ ଶାସନର ଅନ୍ତ ହେଲା । ରାଓ ସୁର୍‌ତାନ୍ ପୁଣି ରାଜା ହେଲେ । ପୃଥ୍ୱୀରାଜ ଓ ତାରାବାଈଙ୍କ ବିବାହ ସମ୍ପନ୍ନ ହେଲା ।

# କାହାଣୀ-ଶିରୋନାମା-ପ୍ରତିଯୋଗିତା

## ଏକ ଉପଯୁକ୍ତ ଶିରୋନାମା ଦେଇ ୨୫ ଟଙ୍କା ପୁରସ୍କାର-ବିଜୟୀ ହୁଅନ୍ତୁ

?

ଗୋଟିଏ ନଦୀ କିନାରରେ ଥାଏ ପୁଷ୍କରିଣୀଟିଏ । ସେଥିରେ ଥାନ୍ତି ନାନା ଧରଣର ଛୋଟ ଛୋଟ ମାଛ । ସେମାନଙ୍କ ଭିତରେ ରହୁଥାଇଥାଏ ମୃଦଙ୍ଗ ନାମକ ଗୋଟାଏ ବଡ଼ ମାଛ । ସେ ସବୁବେଳେ ଛୋଟ ମାଛଙ୍କ ଉପରେ ହାକିମତି ଜାହିର୍ କରେ ଓ ସେମାନଙ୍କୁ ଜଲଦଲ କରେ ।

ଦିନେ ଜଣେ ଚତୁର ଛୋଟ ମାଛ ତାକୁ କହିଲା, "ଆପଣଙ୍କ ମର୍ଯ୍ୟାଦା ଏଠାରେ କିଏ ବୁଝିବ ? ଆପଣ ନଦୀକୁ ଚାଲିଗଲେ ସିନା ଦେଖନ୍ତେ !"

କଥାଟି ମୃଦଙ୍ଗ ମନକୁ ପାଇଲା । ସେ ବନ୍ୟା ବେଳେ ପୁଷ୍କରିଣୀ ଛାଡ଼ି ନଦୀକୁ ଚାଲିଗଲା । ସେଠାରେ ହଠାତ୍ ଦୁଇଟି ବୃହତ୍ତର ମାଛ ଆସି ତାକୁ ଏଣେ ତେଣେ ଠେଲି କହିଲେ, "ତୁ କିଏ ? ଆମ ଆଗକୁ ଆସୁଛୁ, ତୋର ଏଡ଼େ ସାହସ ? ମୃଦଙ୍ଗ ଡରି ହରି ରହିଲା । ସନ୍ଧ୍ୟାବେଳକୁ ବହୁତ ଭୋକ କଲାରୁ ଆହାର ସନ୍ଧାନରେ ବାହାରିଛି, ଗୋଟାଏ ଦାଢ଼ୀ ଲଣବାଲା ମାଛ ଆସି ତାକୁ ଗିଳି ଦେବାକୁ ବସିଲା । ଦୈବାତ୍ ନୌକାଟିଏ ଯିବାରୁ ଦୁହେଁ ଅଲଗା ହୋଇଗଲେ । ମୃଦଙ୍ଗ କୌଣସି ପ୍ରକାରେ ପୁଣି ପୋଖରୀକୁ ପଳାଇ ଆସିଲା । କିନ୍ତୁ ସେଇଦିନଠୁ ସେ ଆଉ ହାକିମତି କରେ ନାହିଁ ।

  

ଉପରୋକ୍ତ କାହାଣୀ ପାଇଁ ସୁବିଚନ୍ତ ଶିରୋନାମାଟିଏ ଠିକ୍ କରି ପୋଷ୍ଟକାର୍ଡ଼ରେ ଲେଖି "ଶିରୋନାମା ପ୍ରତିଯୋଗିତା", ଜହ୍ନମାମୁଁ, Chandamama Buildings, 2 & 3 Arcot Road, Madras-600026 ଠିକଣାରେ ଜୁଲାଇ ୧୦ ତାରିଖ ସୁଦ୍ଧା ପଠାନ୍ତୁ । ତେବେ, ଫଟୋ ପରିଚୟ ପ୍ରତିଯୋଗିତା ପାଇଁ ଲେଖା ଏକା କାର୍ଡ଼ରେ ପଠାଇବେ ନାହିଁ ।

ପ୍ରତିଯୋଗିତାର ଫଳ ସେପ୍ଟେମ୍ବର ' ୭୭ ସଂଖ୍ୟାରେ ପ୍ରକାଶ ପାଇବ ।

---

ମେ ପ୍ରତିଯୋଗିତାର ନିର୍ବାଚିତ ଶିରୋନାମା : "ବସ୍ତୁରିବ ବସ୍ତୁର"

ପୁରସ୍କାର ବିଜୟୀ : ସନ୍ଦୀପ ପଟ୍ଟନାୟକ, ନୟାଗଡ଼ ।

## ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ୨୫

### ପୁରସ୍କୃତ ପରିଚୟୋକ୍ତି ସେପ୍ଟେମ୍ବର ୧୯୭୭ ସଂଖ୍ୟାରେ ପ୍ରକାଶ ପାଇବ







★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଦ୍ୱିର ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ।

★ ଜୁଲାଇ ୧୫ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର ।

★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ ୨୫.୦୦ ପୁରସ୍କାର ପଠାଯିବ ।

★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡ଼ରେ ଲେଖା ହୋଇ (ସେଥିରେ ଅନ୍ୟ କଥା ରହିବା ଅନୁଚିତ) ଜହ୍ନମାମୁଁ ଫୋଟୋ ପରିଚୟ ପ୍ରତିଯୋଗିତା, ଚନ୍ଦାମାମା ବିଲ୍ଡିଙ୍ଗ୍, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

### ସେପ୍ଟେମ୍ବର ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : "କୁନମୁନ ଖାଇ ଢାଳଇ ପାଣି, ଗାଧାଏଁ ମୁହିଁ,"

ଦ୍ୱିତୀୟ ଚିତ୍ର : "ନିଜ କାମ ନିଜେ କରିବା କଥା, ଜାଣିକି ନାହିଁ ?"

ପ୍ରେରକ : ଚିନ୍ମୟ କୁମାର ଷଡ଼ଙ୍ଗୀ, ଜଗନ୍ନାଥ ଖୁଣ୍ଟା, ମୟୂରଭଞ୍ଜ ।

ବିଜୟୀଙ୍କୁ ଅଭିନନ୍ଦନ : ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।

# जी-जान लगाइए... पूरा मजा उठाइए!

बारहवां पूरा हुआ और तेरहवां शुरू। बस अब जितनी परेशानी है, उतनी ही मौज-मस्ती भी। किशोरावस्था के साथ परेशानी शुरू होती है। एंप्रो के तेरहवें बिस्कुट के साथ शुरू होती है मौज-मस्ती। और यह मौज-मस्ती इन दोनों में बराबर-बराबर बंटे बारह बिस्कुटों से मिलनेवाले मजे को भी मात कर देती है।

आज ही एंप्रो का एक पैक आजमाइए।




**एम्प्रो** ®

**ग्लुकोस बिस्कुट**










# ଆମେ ସମସ୍ତେ ପଢିବାକୁ ଭଲପାଉ

# ଜହ୍ନ ମାମୁଁ



**ତେଣୁ ଆପଣ ବ ପଢନ୍ତୁ ।**




ଜହ୍ନମାମାଙ୍କୁ ପଢ଼ନ୍ତି ପୁରୁଷ, ସ୍ତ୍ରୀ, ପିଲାଛୁଆ ସମସ୍ତେ, ବାରଟି ଭାଷାରେ ଯଥା : ଇଂରାଜି, ହିନ୍ଦି, ଓଡ଼ିଆ, ମରାଠୀ, ତେଲୁଗୁ, କାନାଡ଼ା, ତାମିଲ, ଗୁଜରାଟୀ, ମାଲୟାଲମ, ବଂଗଳା, ପଂଜାବୀ, ଆସାମୀରେ ପ୍ରକାଶ ପାଏ । ଶିଶୁମାନଙ୍କ ପାଇଁ ଉଦ୍ଦିଷ୍ଟ ଏହି ପ୍ରତି କାହିଁରେ ଗାଉଁଲି ଗଳ୍ପଗୁଡ଼ିକ ସମସ୍ତଙ୍କର ମନ ହରଦେଇ ଥାଏ । ଜହ୍ନମାମା ଶିଶୁମାନଙ୍କ ପାଇଁ ଏକ ମାସିକ ପତ୍ରିକା ଯାହାକୁ ପଢ଼ିଲେ ବୁଢ଼ା କହେ ମୁଁ ଯୁବକ ହେଲି ଯୁବକ କହେ ମୁଁ ଜ୍ଞାନ ଅର୍ଜିଲି ।



ବାର୍ଷିକ ଗ୍ରାହକ ହେବାପାଇଁ ଯୋଗାଯୋଗ କରନ୍ତୁ ! ଡଲ୍‌ଟନ୍ ଏଜେନ୍‌ସିଜ,
ଜହ୍ନମାମା ବିଲଡିଂ, ମାଡ୍ରାଜ-୬୦୦ ୦୨୬